ଛାତ୍ରସାଥୀ ର ବିଶ୍ୱ ବିଚିତ୍ରା ୫



# ବୈଜ୍ଞାନିକ ଲୁଇସ୍ ବ୍ରେଇଲେ

# ଛାତ୍ରସାଥୀ : ଗ୍ରନ୍ଥରଚନା (୪୦)
ଓ
# ବୈଜ୍ଞାନିକ ଲୁଇସ୍ ବ୍ରେଇଲେ


୨୨ଶ ବର୍ଷ　　୪ର୍ଥ ସଂଖ୍ୟା
୧୯୮୪

●

ସଂପାଦକ :
ଶ୍ରୀ ଯୋଗେନ୍ଦ୍ର କୁମାର ମହାନ୍ତି

●

ପରିକଳ୍ପନା ସଂପାଦକ :
ଶ୍ରୀ ନବକିଶୋର ମହାପାତ୍ର

●

ପ୍ରକାଶକ ଓ ମୁଦ୍ରକ :
କେ. ମହାପାତ୍ର ଏଣ୍ଡ କୋ.ଙ୍କ
ତରଫରୁ
ଶ୍ରୀ ବୃନ୍ଦାବନ ଦାସଙ୍କ ଦ୍ୱାରା
ଗ୍ରାମପଞ୍ଚାୟତ ପ୍ରେସ
କଟକ-୨ ରେ ମୁଦ୍ରିତ

●

ମୂଲ୍ୟ ଟ୨-୦୦


## ସୂଚୀପତ୍ର


ପଢ଼ାବହି ଦେଖିଲେ ମୋତେ "ବିରକ୍ତି" ଲାଗେ । ସେଥି ପାଇଁ ମୁଁ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବାର ଅନ୍ୟ ଉପାୟ ନ ଦେଖି କପି କରିଥିଲି ମାତ୍ର ପରୀକ୍ଷକ ତାହା ଜାଣି ପାରିଲେ । କି ଔଷଧ ଖାଇଲେ ମୋର "ବିରକ୍ତି" ଦୂର ହୋଇ ପଢ଼ାପଢ଼ି ପ୍ରତି ଆଗ୍ରହ ସୃଷ୍ଟି ହେବ ଡାକ୍ତର ବାବୁ ?
କୌଣସି ଔଷଧ ଦରକାର ନାହିଁ । ତୁମ ବାପାଙ୍କୁ କୁହ ସେ ତୁମକୁ ପାଠ୍ୟ ପୁସ୍ତକ ନୁହେଁ, କୌଣସି କିଛି ଶିଶୁ ଓ କିଶୋରମାନଙ୍କ ପାଇଁ ପ୍ରକାଶ ପାଉଥିବା ବହି ଓ ପତ୍ର ପତ୍ରିକା ଆଣି ଦେବେ । ତାକୁଇ ପଢ଼ିଲେ ତୁମର ପଢ଼ା ପ୍ରତି ଆଗ୍ରହ ବଢ଼ିବ ଓ କିଛିଦିନ ପରେ ତାହା ଅଭ୍ୟାସରେ ପରିଣତ ହେବ । ଥରେ ପଢ଼ିବାର ଅଭ୍ୟାସ ସୃଷ୍ଟି ହେଲେ କେବଳ ପଢ଼ାବହି ନୁହେଁ, ଯାହା କିଛି ପଢ଼ ଆଉ "ବିରକ୍ତି" ଲାଗିବ ନାହିଁ ।
+ DOCTOR +

# ବୈଜ୍ଞାନିକ ଲୁଇସ୍ ବ୍ରେଇଲେ

ମଣିଷର ଅନ୍ୟ ଇନ୍ଦ୍ରିୟଗୁଡ଼ିକଠାରୁ ଆଖିର ମହତ୍ତ୍ୱ ଅଧିକ । ଆଖି ନ ଥିଲେ ସଂସାର ଅନ୍ଧାର । କାନ ମଧ୍ୟ ଶ୍ରବଣେନ୍ଦ୍ରିୟ । ଆଖି ସାହାଯ୍ୟରେ ମଣିଷ ସବୁ କିଛି ଦେଖିପାରେ । ପ୍ରକୃତିର ବୈଚିତ୍ର୍ୟ ଅନୁଭବ କରିପାରେ ଓ ଭଲ ମନ୍ଦ ଜାଣିପାରେ । ଏଣୁ ସଂସାରରେ ସବୁକିଛି ଦେଖିବାପାଇଁ କୃପାମୟ ଈଶ୍ୱର ମଣିଷକୁ ଆଖି ଦୁଇଟି ଦେଇଛନ୍ତି; କିନ୍ତୁ ସୃଷ୍ଟିର ବିଧାନ ବିଚିତ୍ର । ଆମ ଭିତରେ ଏପରି କେତେକ ଲୋକ ଅଛନ୍ତି, ଯେଉଁମାନେ ଜନ୍ମରୁ ଅନ୍ଧ କିମ୍ବା କୌଣସି ରୋଗ ହେତୁ ସେମାନଙ୍କର ଦୃଷ୍ଟିଶକ୍ତି ନଷ୍ଟହୋଇ ଯାଇଥାଏ । ଗରିବ ଘରେ ଜନ୍ମ ହୋଇ ଦୃଷ୍ଟିଶକ୍ତି ହରାଇଲେ ତ କଥା ସରିଗଲା । ଭିକ୍ଷା କରିବା ବ୍ୟତୀତ ଅନ୍ୟ ପନ୍ଥା ନାହିଁ । ସେଥିରେ ପୁଣି ବାଟଘାଟ ଚିହ୍ନିବା କଷ୍ଟ । ଦୃଷ୍ଟିଶକ୍ତି ବଳରେ ଲୋକେ କିପରି ସବୁ କାର୍ଯ୍ୟ କରିପାରୁଛନ୍ତି, ପୃଥିବୀ କଅଣ, ଏହା ଜଣେ ଜନ୍ମାନ୍ଧ ପକ୍ଷରେ କଳ୍ପନା କରିବା ସମ୍ଭବ ନୁହେଁ । ଯେଉଁ ଆଡ଼କୁ ଚାହିଁଲେ କେବଳ ଗୋଟିଏ ରଙ୍ଗ—କଳା ଅନ୍ଧାର । ଏହାଠାରୁ ବଳି ଦୁଃଖଦାୟକ ଘଟଣା ସଂସାରରେ ଆଉ କଅଣ ଥାଇପାରେ ?

ଦୃଷ୍ଟିଶକ୍ତି ବଳରେ ମଣିଷ ବିଭିନ୍ନ ପ୍ରକାର ବିଦ୍ୟା ଶିକ୍ଷାକରି ଉନ୍ନତିର ଚରମ ସୋପାନରେ ପହଞ୍ଚି ଥାଏ, କିନ୍ତୁ ଯେ ଦୃଷ୍ଟିଶକ୍ତିହୀନ ସେ ବା କରିବ କଅଣ ? ଦିନେ ମଣିଷ ବିଶ୍ୱାସ କରୁଥିଲା, ଅନ୍ଧ, ଏ ଦୁନିଆରେ କୌଣସି କାର୍ଯ୍ୟ କରିବାପାଇଁ ସମର୍ଥ ନୁହେଁ । କିନ୍ତୁ ମଣିଷର ଏ ବିଶ୍ୱାସ ଅଧିକ ଦିନ ରହିଲା ନାହିଁ । ଦିନ ଆସିଲା ଅନ୍ଧମାନେ ପାଠପଢ଼ି ବିଦ୍ୱାନ ହେଲେ । ବିଭିନ୍ନ ବିଦ୍ୟା ଶିକ୍ଷା କରି ନିଜର ପ୍ରତିଭା ଓ ଶକ୍ତିର ପରିଚୟ ଦେଲେ ।

ପୂର୍ବଭଳି ଅନ୍ଧ ଆଜି ଅସହାୟ ନୁହେଁ; କିନ୍ତୁ ଏହା ସମ୍ଭବ ହେଲା କିପରି ? ବିଜ୍ଞାନର ବହୁମୁଖୀ ବିକାଶ ପରେ ମଧ୍ୟ ବୈଜ୍ଞାନିକମାନେ ଅନ୍ଧମାନଙ୍କ ବିଷୟରେ ଟିକିଏହେଲେ ଚିନ୍ତାକରି ନ ଥିଲେ । କିଏ ସେହି ମହାପୁରୁଷ ଯେ ଅନ୍ଧମାନଙ୍କ ସମ୍ବନ୍ଧରେ ସର୍ବପ୍ରଥମେ ଚିନ୍ତାକଲେ । ଅନ୍ଧମାନଙ୍କୁ ଜ୍ଞାନଚକ୍ଷୁ ଦାନ କଲେ ।

ଯେଉଁ ମହାପୁରୁଷ ସର୍ବପ୍ରଥମେ ଅନ୍ଧମାନଙ୍କର ଦୁର୍ଦ୍ଦଶା ମୋଚନ ପାଇଁ ଚିନ୍ତାକରି ଆବିଷ୍କାର କଲେ ଏକ ଅଭିନବ ପ୍ରକାରର ବର୍ଣ୍ଣମାଳା, ଯେ ଅନ୍ଧମାନଙ୍କର ଆଖିରେ ପ୍ରଥମଥର ପାଇଁ ଆଲୋକ ଭରିଦେଲେ ସେ ହେଉଛନ୍ତି ଅମର ବୈଜ୍ଞାନିକ ଲୁଇସ୍ ବ୍ରେଇଲେ ।

ବାଲ୍ୟକାଳ ଓ ଶିକ୍ଷା

୧୮୦୯ ଖ୍ରୀଷ୍ଟାବ୍ଦ ପୃଥିବୀ ପକ୍ଷରେ ଏକ ଅବିସ୍ମରଣୀୟ ବର୍ଷ । ସେହି ବର୍ଷ ଫ୍ରାନସର କ୍ରାଉପଭ୍ରେ ଗ୍ରାମରେ ଏକ ଅତି ଦରିଦ୍ର ପରିବାରରେ ଜନ୍ମଗ୍ରହଣ କଲେ ଲୁଇସ୍ ବ୍ରେଇଲେ । ପିତା ମାତା କେବଳ ଦରିଦ୍ର ନ ଥିଲେ । ଅଶିକ୍ଷିତ ମଧ୍ୟ ଥିଲେ । ପ୍ୟାରିସ ସହରର ମାତ୍ର ୨୬ ମାଇଲ ଦୂରରେ କ୍ରାଉପଭ୍ରେ ଗ୍ରାମ ଅବସ୍ଥିତ । ଦାରିଦ୍ର୍ୟ ହେତୁ ବ୍ରେଇଲେଙ୍କର ପିତା ମାତା ଗୋଟିଏ ଛୋଟ ଘରେ ବାସ କରୁଥାଆନ୍ତି । ଗବାକ୍ଷ ବିହୀନ ଏହି ଘର । ଘର ଭିତରେ ପବନ ଚଳାଚଳର ସୁବିଧା ନ ଥାଏ । ଘରଟି ବାସ ଉପଯୋଗୀ ନୁହେଁ ଓ ସମ୍ପୂର୍ଣ୍ଣ ଅସ୍ୱାସ୍ଥ୍ୟକର ; କିନ୍ତୁ ଧନହୀନତା ହେତୁ ବ୍ରେଇଲେଙ୍କର ପିତା ମାତା ଏହି ପ୍ରକାର ଘରେ ରହିବାକୁ ବାଧ୍ୟ ହୋଇଥିଲେ । ସେହି ଅନ୍ଧକୂପ ଭିତରେ ଜନ୍ମଗ୍ରହଣ କଲେ ବୈଜ୍ଞାନିକ ବ୍ରେଇଲେ । କିଏ ଜାଣିଥିଲା ଭବିଷ୍ୟତରେ ସେ ନିଜ ଘରର ଅନ୍ଧାର ଦୂର କରିବା ସଙ୍ଗେ ସଙ୍ଗେ ଅନ୍ଧମାନଙ୍କର ଆଖିରେ ଆଲୋକ ଭରିଦେବେ ?

ଗୋଟିଏ ବଖରିଆ ଘର । ସେହି ଘର ବ୍ରେଇଲେଙ୍କର ପିତାମାତାଙ୍କର ରନ୍ଧନ-ଶାଳା, ଶୟନ କକ୍ଷ, ଏପରି କି ସଂସାରର ସମସ୍ତ ପ୍ରକାର କାମ ସେହି ଘର ବଖରକ ଭିତରେ ଚାଲିଥାଏ । ଏତିକିରେ କଷ୍ଟ ଶେଷ ହୁଏନାହିଁ । ପାଖରେ ପାଣି ନାହିଁ । ପାଣିପାଇଁ ବ୍ରେଇଲେଙ୍କର ପିତା ମାତାଙ୍କୁ ପ୍ରାୟ ମାଇଲିଏ ବାଟ ଯିବାକୁ ପଡ଼େ ।

ଘରିପାଖରେ ପାହାଡ଼ । ପାହାଡ଼ରେ ବିଭିନ୍ନ ପ୍ରକାରର ଶସ୍ୟ ଉତ୍ପାଦିତ ହୁଏ । ଶସ୍ୟ ଭଣ୍ଡାର ଭିତରେ ବ୍ରେଇଲେଙ୍କର ଘର ଥାଇ ମଧ୍ୟ ଅନେକ ଦିନ ତାଙ୍କର ପିତା ମାତାଙ୍କୁ ଖାଲି ପେଟରେ ଦିନ କଟାଇବାକୁ ପଡ଼େ । ବ୍ରେଇଲେଙ୍କର ଭାଇ ଭଉଣୀ ମାନଙ୍କର ସଂଖ୍ୟା ମଧ୍ୟ କମ ନୁହେଁ ।

ଲୁଇସ ବ୍ରେଇଲେ ପିଲାଦିନେ ବିଭିନ୍ନ ରୋଗଦ୍ୱାରା ଆକ୍ରାନ୍ତ ହୋଇ ଦୁର୍ବଳ ହୋଇ ପଡ଼ିଥିଲେ । ଉପଯୁକ୍ତ ଚିକିତ୍ସା ପାଇଁ ଅର୍ଥର ଅଭାବ । ଲୁଇସଙ୍କର ପିତାମାତା ଭାବିଥିଲେ, ପିଲାଟି ବେଶିଦିନ ବଞ୍ଚିବ ନାହିଁ ; କିନ୍ତୁ ଯେ ଅନ୍ୟର ମଙ୍ଗଳ କରିବାକୁ ଜନ୍ମଗ୍ରହଣ କରିଛି ସେ ମରିବ ବା କିପରି ?

ଦିନ ଗଡ଼ ଚାଲିଲା । ଲୁଇସଙ୍କର ସ୍ୱାସ୍ଥ୍ୟରେ କ୍ରମେ ଉନ୍ନତି ଘଟିଲା । ପିତାମାତାଙ୍କର ମନରେ ଆଶାର ସଞ୍ଚାର ହେଲା । ଲୁଇସ ପିତାମାତାଙ୍କର ଚତୁର୍ଥ ଓ ଶେଷ ସନ୍ତାନ । ତାଙ୍କର ବଡ଼ ଭାଇଙ୍କର ନାମ ଲୁଇସ ସିମନ ଓ ଭଉଣୀ ଦୁଇଜଣଙ୍କର ନାମ କେଥରିନ୍ ଜୋସଫିନ୍ ଓ ମେରୀ ସେଲିନ ।

ଏକ ବିକ୍ଷୁବ୍‌ଧ ମୁହୂର୍ତ୍ତରେ ଜନ୍ମଗ୍ରହଣ କଲେ ଲୁଇସ ବ୍ରେଇଲେ । ସେତେ-ବେଳେ ଫ୍ରାନ୍‌ସରେ ବିପ୍ଳବର ନିଆଁ ଜଳୁ ଥାଏ । ସରକାରଙ୍କର ଅତ୍ୟାଚାରରେ ଲୋକେ

ଉତ୍ତ୍ୟକ୍ତ ହୋଇ ଆରମ୍ଭ କରିଥାଆନ୍ତି ବିପ୍ଳବ । ବିପ୍ଳବୀମାନେ ରାଜା ଷୋଡ଼ଶ ଲୁଇ ଓ ମେରେଇ ଏଣ୍ଟଇନେଟଙ୍କୁ ହତ୍ୟା କରିଥାଆନ୍ତି । ବିଶ୍ୱବୀର ନେପୋଲିୟନ ସେତେବେଳେ ଫ୍ରାନସର ନୂତନ ସମ୍ରାଟ । କିନ୍ତୁ ଲୁଇସଙ୍କର ଜନ୍ମସ୍ଥାନ ସେହି ଛୋଟ ଗ୍ରାମଟିରେ ପୂର୍ଣ୍ଣ ଶାନ୍ତି ବିରାଜମାନ କରୁଥାଏ ।

ଲୁଇସଙ୍କର ପିତା ମାତା ଦାରିଦ୍ର୍ୟର ପ୍ରଜା ହୋଇ ରହିଥିଲେ ବି ସେମାନେ ଥିଲେ ବଡ଼ ସରଳ ଓ ସତ୍ୟପ୍ରିୟ । ଅକ୍ଳାନ୍ତ ପରିଶ୍ରମ କରି ସେମାନେ ନିଜର ଓ ଛଅଟି ସନ୍ତାନଙ୍କର ଭରଣପୋଷଣ କରୁଥାଆନ୍ତି । ଲୁଇସଙ୍କର ପିତା ମୋନସିଏର ବ୍ରେଇଲେଙ୍କର ସତ୍ୟପ୍ରିୟ ଓ ସରଳ ବ୍ୟକ୍ତି ରୂପେ ଖ୍ୟାତି ଥିଲା; କିନ୍ତୁ ଏ ପରିବାରର ପିଲାଠାରୁ ବଡ଼ ପର୍ଯ୍ୟନ୍ତ ସମସ୍ତେ କଠିନ ପରିଶ୍ରମ କରୁଥିଲେ । ସନ୍ତାନମାନଙ୍କ ମଧ୍ୟରେ ଲୁଇସ ବ୍ରେଇଲେ ଥିଲେ ଅତି ତୀକ୍ଷ୍ଣ ବୁଦ୍ଧି । ପିଲାଦିନରୁ ତାଙ୍କ ମୁହଁରେ ହସ ପ୍ରାୟ ଲାଗିରହିଥାଏ ।

ଲୋକେ ବିଶ୍ୱାସ କରୁଥିଲେ—ଲୁଇସ ବ୍ରେଇଲେ ଗପୁଡ଼ି । ସେ ମୋଟେ ନୀରବ ରହିପାରୁ ନ ଥିଲେ । ପରିଚିତ, ଅପରିଚିତ ଯେ କୌଣସି ବ୍ୟକ୍ତିଙ୍କୁ ଦେଖିଲେ ତାଙ୍କ ସହିତ କଥାବାର୍ତ୍ତା ଆରମ୍ଭ କରି ଦେଉଥିଲେ । ବ୍ରେଇଲେଙ୍କର ପିତା ମାତା ପୁଅର ଏ ପ୍ରକାର ବ୍ୟବହାରରେ ଅତି ଆନନ୍ଦିତ ହେଉଥିଲେ । କେବଳ ପିତା ମାତା କାହିଁକି, ବ୍ରେଇଲେଙ୍କୁ ସମସ୍ତେ ସ୍ନେହ ଓ ଆଦର କରୁଥିଲେ । ବ୍ରେଇଲେଙ୍କର ଭାଇ ଭଉଣୀମାନେ ତାଙ୍କୁ ଦଣ୍ଡେହେଲେ ପାଖରୁ ଛାଡ଼ୁ ନ ଥିଲେ । ଯେଉଁଆଡେ ଗଲେ ବ୍ରେଇଲେଙ୍କୁ ସାଙ୍ଗରେ ନେଉଥିଲେ ।

ପିଲାଦିନରୁ ବ୍ରେଇଲେ ଥିଲେ ବଡ ଅନୁସନ୍ଧିତ୍ସୁ । ମନରେ ଟିକିଏ କୌତୂହଳ ଜାତ ହେଲେ ସେ ତାହା ଶାନ୍ତ ହେବା ପର୍ଯ୍ୟନ୍ତ ପ୍ରଶ୍ନ ପଚାରୁ ଥିଲେ । ବୟସ୍କ ଲୋକମାନେ ଛୋଟ ପିଲାଟିର ଏ ପ୍ରକାର ପ୍ରଶ୍ନଦ୍ୱାରା ସମୟ ସମୟରେ ଅଡୁଆରେ ପଡନ୍ତି । କେତେକ ପ୍ରଶ୍ନର ଉତ୍ତର ଦେବା ନିମନ୍ତେ ସମର୍ଥ ହୁଅନ୍ତି ନାହିଁ ।

ପିତାଙ୍କ ସହିତ ବ୍ରେଇଲେ କାରଖାନାକୁ ଯାଇଥାନ୍ତି । ବାପା କାମ କରୁଥିବା ସମୟରେ ସେ ଏକଦୃଷ୍ଟିରେ ସେହି ଦିଗକୁ ଚାହିଁ ରହିଥାଆନ୍ତି । ବାପାଙ୍କୁ ବିଭିନ୍ନ ପ୍ରକାର ପ୍ରଶ୍ନ ପଚାରନ୍ତି । ବ୍ରେଇଲେଙ୍କର ପିତା ପ୍ରଶ୍ନ ବାଣରେ ଜର୍ଜରିତ ହେଲେ ମଧ୍ୟ ଟିକିଏ ହେଲେ ବିରକ୍ତ ନ ହୋଇ ପୁଅର ପ୍ରତ୍ୟେକ ପ୍ରଶ୍ନର ଉତ୍ତର ଧୀର ଓ ଶାନ୍ତ କଣ୍ଠରେ ଦିଅନ୍ତି । ପୁଅ ନୀରବ ହେଲେ ପିତା ପଚାରନ୍ତି—'ବଡ଼ ହେଲେ ତୁ କଅଣ କରିବୁ ?' ବ୍ରେଇଲେ ଉତ୍ତର ଦିଅନ୍ତି—'ମୁଁ ଗୋଟିଏ ବଡ଼ କାରଖାନା ଖୋଲିବି ।'

ଏସବୁ ସତ୍ତ୍ୱେ ବ୍ରେଇଲେଙ୍କର ପିତା ପୁତ୍ରର ଗତିବିଧି ଉପରେ ତୀକ୍ଷ୍ଣ ଦୃଷ୍ଟି

ରଖିଥିଲେ । ତାଙ୍କର ଅନୁପସ୍ଥିତିରେ ବ୍ରେଇଲେ ଯେପରି କାରଖାନରେ ପ୍ରବେଶ ନ କରିବେ ସେଥି ନିମନ୍ତେ ସେ ପୁଅକୁ ବାରମ୍ବାର ସତର୍କ କରାଇ ଦେଉଥିଲେ । କାରଣ କାରଖାନାରେ କେହି ନ ଥିବା ବେଳେ ବ୍ରେଇଲେ ବିଭିନ୍ନ କଳ କବଜାରେ ଲାଗି ଦୁର୍ଘଟଣାଗ୍ରସ୍ତ ହୋଇପାରନ୍ତି ।

ଦିନ ସମାନ ଯାଏ ନାହିଁ । ମଣିଷର ସମସ୍ତ ସତର୍କତା ସତ୍ତ୍ୱେ ଏପରି ଘଟଣାମାନ ଘଟିଯାଏ ଯାହା ସେ କେବେ ଆଶା କରି ନଥାଏ ।

ଯେତେବେଳେ ବ୍ରେଇଲେଙ୍କର ବୟସ ମାତ୍ର ତିନିବର୍ଷ । ସେଦିନ ତାଙ୍କର ପିତା କୌଣସି କାମରେ ବାହାରକୁ ଯାଇଥାଆନ୍ତି । ପିତାଙ୍କ ଅନୁପସ୍ଥିତିରେ ବ୍ରେଇଲେ କାରଖାନା ନିକଟରେ ଉପସ୍ଥିତ ହେଲେ । ସେ ଦେଖିଲେ ଦ୍ୱାର ଖୋଲାଅଛି । ବ୍ରେଇଲେ ଚାରିଆଡ଼କୁ ଚାହିଁଲେ । ଦେଖିଲେ ପାଖରେ କେହି ନାହାନ୍ତି । ସେ କାରଖାନା ଭିତରେ ପ୍ରବେଶ କଲେ ।

ବ୍ରେଇଲେଙ୍କର ପିତା ତୀକ୍ଷ୍ଣଧାର ଛୁରୀରେ ଚମଡ଼ା କାଟନ୍ତି । ବ୍ରେଇଲେ ତାହା ଦେଖିଥିଲେ । ଶିଶୁ ଅନୁକରଣ ପ୍ରିୟ । ବ୍ରେଇଲେ ଗୋଟିଏ ଉଚ୍ଚ ବେଞ୍ଚ ଉପରକୁ ଉଠିଯାଇ ଛୁରୀଟିକୁ ଉଠାଇ ନେଇ ଚମଡ଼ା କାଟିବାକୁ ଆରମ୍ଭ କଲେ । କିନ୍ତୁ ଶରୀରର ଭାରସାମ୍ୟ ରକ୍ଷା କରି ନ ପାରି ଗୋଟିଏ ଆଡ଼କୁ ଢଳି ପଡ଼ିଲେ । ଛୁରୀର ଅଗ୍ରଭାଗ ତାଙ୍କର ବାମ ଆଖିରେ ପଶିଗଲା । ସେହିଦିନ ବ୍ରେଇଲେଙ୍କର ବାମ ଆଖିଟି ସମ୍ପୂର୍ଣ୍ଣ ରୂପେ ନଷ୍ଟ ହୋଇଗଲା ।

ବାମ ଆଖିର କ୍ଷତରୁ ରକ୍ତ ଝରିବା ବନ୍ଦ ହେଲା ନାହିଁ । ସେତେବେଳେ ଚକ୍ଷୁ ଚିକିତ୍ସା ବିଶେଷ ଉନ୍ନତ ନଥିଲା । ବ୍ରେଇଲେଙ୍କର ବାମ ଆଖିର ସଂକ୍ରମଣ ହେତୁ ଡାହାଣ ଆଖିଟି ମଧ୍ୟ ନଷ୍ଟ ହୋଇଗଲା । ସେ ସମ୍ପୂର୍ଣ୍ଣ ଅନ୍ଧ ହୋଇଗଲେ ।

ବ୍ରେଇଲେଙ୍କର ପିତା ମାତାଙ୍କର ଦୁଃଖର ସୀମା ରହିଲା ନାହିଁ । କଅଣ କରିବେ ସେମାନେ ପ୍ରଥମେ ସ୍ଥିରକରି ପାରିଲେ ନାହିଁ । ତାପରେ ବ୍ରେଇଲେଙ୍କର ପିତା ଭାବିଲେ ପୁଅ ଅନ୍ଧ ହେଲେ ମଧ୍ୟ ବଞ୍ଚି ରହିବ । ନିଜେ ଚଳପ୍ରଚଳ ହେବ । ଏଥିପାଇଁ ତାକୁ ସର୍ବଦା ଅନ୍ୟ ଉପରେ ନିର୍ଭର କରିବାକୁ ପଡ଼ିବ । ପୁଅ ଯେପରି ଆତ୍ମନିର୍ଭରଶୀଳ ହୋଇପାରିବ , ସେଥିପାଇଁ ପିତା ପୁତ୍ରକୁ ଶିକ୍ଷା ଦେବାକୁ ଲାଗିଲେ । ସେ ବ୍ରେଇଲେଙ୍କ ହାତରେ ବାଡ଼ି ଖଣ୍ଡିଏ ଦେଇ ତାଙ୍କୁ ବାଟ ଠଉରାଇ ଚାଲିବାପାଇଁ ଶିକ୍ଷା ଦେଲେ । ବିଭିନ୍ନ ସ୍ଥାନକୁ ଯିବାର ବାଟ ସହିତ ବ୍ରେଇଲେଙ୍କର ଭାଇ ଭଉଣୀମାନେ ତାଙ୍କୁ ପରିଚିତ କରାଇଲେ ।

ଦୃଷ୍ଟିଶକ୍ତି ହରାଇବା ପୂର୍ବରୁ ବ୍ରେଇଲେ ନିଜ ଘର ଚାରିପାଖର ପରିବେଶ ସହିତ ପରିଚିତ ଥିଲେ । ସେ କାହାରି ଉପରେ ନିର୍ଭର ନ କରି ବିଭିନ୍ନ ସ୍ଥାନକୁ ବାଡ଼ ଖଣ୍ଡିଏ ଧରି ଯିବାକୁ ଲାଗିଲେ । ପୂର୍ବଭଳି ବ୍ରେଇଲେ ପ୍ରତିଦିନ ବାପାଙ୍କ ସହିତ କାରଖାନାକୁ ଯାଆନ୍ତି । ଚମଡ଼ା କାମ କିପରି କରିବାକୁ ହେବ ସେ ସମ୍ବନ୍ଧରେ ପିତା, ପୁତ୍ରକୁ ଶିକ୍ଷା ଦିଅନ୍ତି । ଆଖିକୁ ଦେଖାଯାଉ ନଥିଲେ ମଧ୍ୟ ବ୍ରେଇଲେ ନିଜର ତୀକ୍ଷ୍ଣ ଅନୁଭବ ଶକ୍ତିଦ୍ୱାରା ସବୁକିଛି ଚିହ୍ନି ପାରୁଥିଲେ । ବିଭିନ୍ନ ଜିନିଷ ରହିଥିବା ସ୍ଥାନଗୁଡ଼ିକ ସହିତ ପିତା ନିଜର ଅନ୍ଧ ପୁଅକୁ ପରିଚିତ କରାଇ ଦିଅନ୍ତି ।

ଚମଡ଼ା କାଟିବାରେ ବ୍ରେଇଲେଙ୍କର ଦକ୍ଷତା ଥିଲା ଅସାଧାରଣ । ଆଖିକୁ ଦେଖାଯାଉ ନ ଥିଲେ ମଧ୍ୟ ସେ ମାପ ଅନୁସାର ଚମଡ଼ା ଖୁବ୍ ଶୀଘ୍ର କାଟି ପାରୁଥିଲେ ।

ବ୍ରେଇଲେଙ୍କର ବୟସ ସେତେବେଳେ ସାତ ବର୍ଷ । ଅନ୍ଧ ହେବାର ଚାରିବର୍ଷ ହୋଇଗଲାଣି; କିନ୍ତୁ ବାଳକ ବ୍ରେଇଲେ ବଡ଼ ହେବା ସଙ୍ଗେ ସଙ୍ଗେ ଅତୀତକୁ ଭୁଲି ଯିବାକୁ ଲାଗିଲେ । ଅନ୍ଧହେବା ପୂର୍ବରୁ ସେ ଯାହାସବୁ ଦେଖିଥିଲେ ତାକୁ ଭୁଲିଗଲେ । ଶେଷରେ ମନୁଷ୍ୟର ଆକୃତି ଓ ପୃଥିବୀର ସ୍ଥାବର ଜଙ୍ଗମମାନଙ୍କ ସମ୍ବନ୍ଧରେ ତାଙ୍କର କୌଣସି ଧାରଣା ରହିଲା ନାହିଁ ।

ବ୍ରେଇଲେ କିନ୍ତୁ ସଦା ଆନନ୍ଦିତ ଥିଲେ । ସେ କାହାରିକୁ ଦେଖି ନ ପାରିଲେ ମଧ୍ୟ ସମସ୍ତଙ୍କ ସହିତ ଆନନ୍ଦରେ କଥାବାର୍ତ୍ତା ହେଉଥିଲେ । କଣ୍ଠସ୍ୱରରୁ ସେ ପ୍ରତ୍ୟେକ ବ୍ୟକ୍ତିଙ୍କର ପରିଚୟ ଜାଣିପାରନ୍ତି । ଏହି ବୟସରେ ବ୍ରେଇଲେ ସମ୍ପୂର୍ଣ୍ଣ ଆତ୍ମନିର୍ଭର ଶୀଳ ହୋଇ ଉଠିଲେ । କୌଣସି କାର୍ଯ୍ୟରେ କାହାରି ସାହାଯ୍ୟ ନେବାକୁ ସେ ପସନ୍ଦ କରୁ ନ ଥିଲେ । ଏଥର ସେ ବାଡ଼ ଖଣ୍ଡିଏ ଧରି ନିକଟରେ ଥିବା ପାହାଡ଼ ଉପରକୁ ଘର ବୁଲିବାକୁ ଯାଆନ୍ତି । ବାଟ ଚିହ୍ନିବାରେ ଟିକିଏ ହେଲେ ଭୁଲ ହୁଏନାହିଁ ।

ବ୍ରେଇଲେ କିନ୍ତୁ ଗୋଟିଏ ଅଭାବ ଅନୁଭବ କରୁଥିଲେ । ସେ କାହାରିକୁ ଦେଖିପାରୁ ନ ଥିବାରୁ ପାଖରେ ସମସ୍ତେ ଥାଇ ମଧ୍ୟ ସେ ନିଜକୁ ବଡ଼ ନିଃସଙ୍ଗ ମନେ କରୁଥିଲେ । ବଡ଼ ହେବା ସଙ୍ଗେ ସଙ୍ଗେ ବ୍ରେଇଲେଙ୍କର ରୂପ ଓ ଗୁଣ ମଧ୍ୟ ବଦଳିଗଲା । ପିଲାଦିନେ ସେ ଥିଲେ ଚଗଲା । ସେ କୌଣସି ବ୍ୟକ୍ତିଙ୍କୁ ଦେଖିଲେ ତାଙ୍କ ସହିତ କଥାବାର୍ତ୍ତା ହେଉଥିଲେ । ତାଙ୍କର ପ୍ରତ୍ୟେକ ମୁହୂର୍ତ୍ତ ଥିଲା ଆନନ୍ଦମୁଖର । କିନ୍ତୁ ବ୍ରେଇଲେ କ୍ରମେ ନୀରବ ହୋଇ ପଡ଼ିଲେ । ଶାନ୍ତ ହୋଇ ବସି ରହିବାକୁ ତାଙ୍କୁ ଭଲ ଲାଗୁଥିଲା । ଆବଶ୍ୟକତା ନ ହେଲେ ସେ କଥାବାର୍ତ୍ତା କରୁ ନ ଥିଲେ ।

ବ୍ରେଇଲେଙ୍କର ମୁହଁରୁ ହସ ପ୍ରାୟ ଲିଭିଯାଇ ଥିଲା । ଲୋକେ ତାଙ୍କୁ ଦେଖି ଦୁଃଖିତ ହେଉଥିଲେ । ତାଙ୍କର ଶୁଭେଚ୍ଛୁମାନେ ଭାବୁଥିଲେ ଏ ସଂସାରରେ ଅନ୍ଧ

ବ୍ରେଇଲେ ନିଜର ଭରଣପୋଷଣ କରିପାରିବେ ନାହିଁ; କିନ୍ତୁ ପ୍ରତିଭାର ଆଲୋକ ବ୍ରେଇଲେଙ୍କ ର ମନରେ ସାହସ ଓ ଧୈର୍ଯ୍ୟ ଭରି ଦେଇଥିଲା । ସେ ନିଜର ସମସ୍ତ କାମ କାହାରି ସାହାଯ୍ୟ ନ ନେଇ କରୁଥିଲେ ।

ଦିନ କଟିଯିବାକୁ ଲାଗିଲା । ସେହି ସମୟରେ ଲୁଇସଙ୍କ ଗ୍ରାମକୁ ଜଣେ ନୂଆ ପାଦ୍ରୀ ଆସିଲେ । ତାଙ୍କର ନାମ ଜେକ୍ୟୁସ ପାଲୁଇ । ପାଦ୍ରୀ ଥିଲେ ଜଣେ ପଣ୍ଡିତ । ପରୋପକାର ଛଡ଼ା ସେ ଅନ୍ୟ କିଛି ଚିନ୍ତା କରୁ ନଥିଲେ । ଅଳ୍ପ ଦିନ ଭିତରେ ଅନ୍ଧ ବ୍ରେଇଲେଙ୍କ ସହିତ ତାଙ୍କର ପରିଚୟ ହେଲା । ସେ ବ୍ରେଇଲେଙ୍କୁ ନିଜ ଘରକୁ ଡକାଇ ନେଲେ । ସେତେବେଳେ ବ୍ରେଇଲେଙ୍କର ବୟସ ସାତ ବର୍ଷ । ପାଦ୍ରୀଙ୍କ ମନରେ କରୁଣାର ଉଦ୍ରେକ ହେଲା । ବ୍ରେଇଲେଙ୍କୁ କିପରି ସାହାଯ୍ୟ କରି ତାଙ୍କର ଜୀବନକୁ ସରସ କରି ପାରିବେ ସେ ତାହାହିଁ ଚିନ୍ତା କରିବାକୁ ଲାଗିଲେ ।

ପାଦ୍ରୀ ଭାବିଲେ ବ୍ରେଇଲେ ଲେଖାପଢ଼ା ଶିଖିପାରିଲେ ସମ୍ପୂର୍ଣ୍ଣ ଆତ୍ମନିର୍ଭରଶୀଳ ହୋଇପାରିବେ । ପର୍ବତ ଉପରେ ପାଦ୍ରୀ ଗୋଟିଏ ଛୋଟ ସୁନ୍ଦର ଘରେ ବାସ କରୁଥାଆନ୍ତି । ବ୍ରେଇଲେ ବାଡ଼ ଖଣ୍ଡିଏ ଧରି ପାଦ୍ରୀଙ୍କ ଘରକୁ ପ୍ରାୟ ପ୍ରତିଦିନ ଯାଆନ୍ତି । ପାଠ ପଢ଼ିବାପାଇଁ ତାଙ୍କ ମନରେ ପ୍ରବଳ ଆଗ୍ରହ ଜାତ ହେଲା । ପାଦ୍ରୀ ଯାହା ଶିକ୍ଷା ଦିଅନ୍ତି ସେ ଘରେ ତାକୁ ଅଭ୍ୟାସ କରନ୍ତି । ପିତା ମାତା ମଧ୍ୟ ପୁଅର ପାଠ ପଢ଼ା ପ୍ରତି ବିଶେଷ ଦୃଷ୍ଟି ଦେବାକୁ ଲାଗିଲେ ।

ବ୍ରେଇଲେ ଅନ୍ଧ ଆଖିକୁ କିଛି ଦେଖା ନ ଗଲେ ମଧ୍ୟ ସେ କାନରେ ସବୁ ଶୁଣି ଜାଣିପାରନ୍ତି । ପାଦ୍ରୀଙ୍କର ଘର ସମ୍ମୁଖରେ ସୁନ୍ଦର ବଗିଚାଟିଏ ଥାଏ । ବହୁ ପ୍ରକାର ଫଳ ଓ ଫୁଲ ଗଛରେ ବଗିଚାଟି ପରିପୂର୍ଣ୍ଣ । ପାଦ୍ରୀ ବ୍ରେଇଲେଙ୍କୁ ନେଇ ଗଛର ସୁଶୀତଳ ଛାୟାରେ ବସନ୍ତି । ସଂସାରର ବିଭିନ୍ନ କଥା ସମ୍ବନ୍ଧରେ ତାଙ୍କୁ ଶିକ୍ଷା ଦିଅନ୍ତି ।

ପାଦ୍ରୀଙ୍କ ପାଖରେ ଥିବା ସମୟରେ ବ୍ରେଇଲେଙ୍କର ମନ ପୁଲକିତ ହୋଇଉଠେ । ଉଦ୍ୟାନରେ ବିଭିନ୍ନ ପକ୍ଷୀଙ୍କର ସଙ୍ଗୀତ ତାଙ୍କର ହୃଦୟରେ ସ୍ୱର୍ଗୀୟ ଆନନ୍ଦ ଭରିଦିଏ । ପକ୍ଷୀମାନଙ୍କର ମଧୁର ସ୍ୱର ଶୁଣି ବ୍ରେଇଲେଙ୍କର ସଙ୍ଗୀତ ପ୍ରତି ଆଗ୍ରହ ଜାତ ହେଲା । ପାଦ୍ରୀଙ୍କ ଠାରୁ ଶିକ୍ଷା ଲାଭ କରିବା ସଙ୍ଗେ ସଙ୍ଗେ ତାଙ୍କର ଈଶ୍ୱରଙ୍କ ପ୍ରତି ବିଶ୍ୱାସ ଦୃଢ଼ ହେବାକୁ ଲାଗିଲା ।

ସାଙ୍ଗ ପିଲାମାନେ ଆନନ୍ଦରେ ଖେଳନ୍ତି ଓ ନାଚନ୍ତି । ବ୍ରେଇଲେ ସେମାନଙ୍କ ସହିତ ଯୋଗ ଦେଇ ପାରନ୍ତି ନାହିଁ । ସେହି ସମୟରେ ସେ ଈଶ୍ୱର ଚିନ୍ତା ଓ ସଙ୍ଗୀତ ଅଭ୍ୟାସ କରି ଖେଳିବା ଠାରୁ ଅଧିକ ଆନନ୍ଦ ଅନୁଭବ କରନ୍ତି ।

ବ୍ରେଇଲେଙ୍କର ଜ୍ଞାନ କ୍ରମେ ବୃଦ୍ଧି ପାଇଲା । ସେ ପାଦ୍ରୀଙ୍କ ମୁହଁରୁ ବାଇବେଲର ଧର୍ମ କାହାଣୀମାନ ଶୁଣିବାକୁ ଲାଗିଲେ । ପାଦ୍ରୀ ପ୍ରତି କଥାର ମୂଳନୀତି ତାଙ୍କୁ ସରଳ ଭାଷାରେ ବୁଝାଇ ଦେଉଥିଲେ । ବାଇବେଲର ପ୍ରାୟ ସମସ୍ତ ଧାର୍ମିକ କାହାଣୀ ଶୁଣିବା ପରେ ବ୍ରେଇଲେ ଯୀଶୁ ଖ୍ରୀଷ୍ଟଙ୍କୁ ନିଜର ଆଦର୍ଶ ରୂପେ ଗ୍ରହଣ କଲେ । ବାଇବେଲର ଶିକ୍ଷା ତାଙ୍କ ମନରେ ଆନନ୍ଦ ଓ ଉତ୍ସାହ ଭରିଦେଲା । ସେ ବୁଝି ପାରିଲେ—ଦୁଃଖ, ସୁଖର ପ୍ରଥମ ସୋପାନ । ଜୀବନରେ ଯେତେ ଦୁଃଖ କଷ୍ଟ ଆସିଲେ ମଧ୍ୟ ତିଳେମାତ୍ର ବିଚଳିତ ନ ହୋଇ ସେ ସବୁର ସମ୍ମୁଖୀନ ହେବା ଉଚିତ । ସଂଗ୍ରାମ ଭିତରେ ହିଁ ମଣିଷ ବଞ୍ଚିରୁହେ, ଜୀବନ କର୍ମଚଞ୍ଚଳ ଓ ଆନନ୍ଦମୁଖର ହୋଇଉଠେ ।

ବ୍ରେଇଲେଙ୍କର ମନରୁ ଅସହାୟତା ଦୂର ହୋଇଗଲା । ସେ ବୁଝିପାରିଲେ ଅନ୍ଧ ହେଲେ ମଧ୍ୟ ତାଙ୍କର ଜୀବନର ଯଥେଷ୍ଟ ମୂଲ୍ୟ ରହିଛି । ଭଗବାନଙ୍କର ସାହାଯ୍ୟରେ ସେ ନିଜ ଜୀବନର ମହତ୍ତ୍ୱପୂର୍ଣ୍ଣ ଉପଯୋଗ କରିପାରିବେ ।

ପାଦ୍ରୀଙ୍କର ଧର୍ମ ଶିକ୍ଷା ବ୍ରେଇଲେଙ୍କର ଜୀବନରେ ପ୍ରଧାନ ସହାୟକ ହେଲା । ଈଶ୍ୱରଙ୍କ ଉପରେ ଦୃଢ଼ ବିଶ୍ୱାସ ରଖି ସେ ନିଜ କାମରେ ଲାଗିପଡ଼ିଲେ । କିଛିଦିନ ଏହିପରି ଘରରେ କାମ କଲାପରେ ସେ ନିଜ ଭିତରେ ଏକପ୍ରକାର ଅଦ୍ଭୁତ ପରିବର୍ତ୍ତନ ଅନୁଭବ କଲେ ।

ବ୍ରେଲଲେଙ୍କୁ ପ୍ରକୃତିର ସାନ୍ନିଧ୍ୟ ବଡ ଆନନ୍ଦମୟ ବୋଧ ହେଲା । ସେ ନିର୍ଜ୍ଜନ ସ୍ଥାନରେ ବସି ଘଣ୍ଟା ଘଣ୍ଟା ଧରି ଚିନ୍ତା କରୁଥିଲେ ।

ବ୍ରେଇଲେଙ୍କ ଭିତରେ ଘଟୁଥିବା ପରିବର୍ତ୍ତନ ପାଦ୍ରୀ ମଧ୍ୟ ଲକ୍ଷ୍ୟ କଲେ । ନିଜ ଶିକ୍ଷାର ସାର୍ଥକତା ଦେଖି ସେ ଆନନ୍ଦ ଅନୁଭବ କଲେ । ସେ ଭାବିଲେ ବ୍ରେଇଲେଙ୍କୁ ବିଦ୍ୟାଳୟରେ ଶିକ୍ଷାଦେଲେ ଭଲ ହେବ । ଗାଁରେ ବିଦ୍ୟାଳୟଟିଏ ଥାଏ । ସେହି ବିଦ୍ୟାଳୟର ଶିକ୍ଷକ ଥାଆନ୍ତି ମୋନେସିଭର । ସେହି ବିଦ୍ୟାଳୟରେ ବ୍ରେଇଲେ ଅନ୍ୟ ପିଲାଙ୍କ ସହିତ ପାଠ ପଢ଼ିବା ଆରମ୍ଭ କଲେ ।

ଲୁଇସଙ୍କୁ ଦେଖି ସମସ୍ତଙ୍କ ମନରେ ବିସ୍ମୟ ସୃଷ୍ଟି ହୁଏ । ସେମାନେ ଭାବନ୍ତି ଯେ, ଅନ୍ଧ ସେ ପାଠ ପଢ଼ିବ କିପରି ? ସେମାନେ ଲୁଇସଙ୍କୁ ପରିହାସ କରନ୍ତି । ଲୁଇସ କିନ୍ତୁ ଅବିଚଳିତ । ସେ ତିଳେ ହେଲେ ବିରକ୍ତ ହୁଅନ୍ତି ନାହିଁ । ଶିକ୍ଷକ, ଲୁଇସଙ୍କୁ ଗଭୀର ଶ୍ରଦ୍ଧା କରୁଥିଲେ । ଲୁଇସଙ୍କୁ ପଢ଼ାଇବାପାଇଁ ସେ ଅନବରତ ଚେଷ୍ଟା କରିବାକୁ ଲାଗିଲେ ।

ଏକାନ୍ତ ଜୀବନ ପରେ ସ୍କୁଲରେ ବହୁ ପିଲାଙ୍କ ସହିତ ମିଳାମିଶା, ଲୁଇସଙ୍କ ଜୀବନରେ ପୁଣି ପରିବର୍ତ୍ତନ ଆଣିଲା । ଜୀବନ ସରସ ମନେହେଲା । ଲୁଇସ ସ୍କୁଲକୁ ଯାଇ

ଧୀରସ୍ଥିର ଭବରେ ବସନ୍ତ । ଶିକ୍ଷକ ଯାହା କୁହନ୍ତି ମନଦେଇ ଶୁଣନ୍ତି । ବହି ପଢ଼ିବାର ଶକ୍ତି ତାଙ୍କର ନଥିଲା । ଏଣୁ ସେ ଯାହା ଶୁଣୁଥିଲେ ତାହା ମନେ ରଖିବାକୁ ଚେଷ୍ଟା କରୁଥିଲେ ।

କିଛିଦିନ ସ୍କୁଲରେ ଶିକ୍ଷାଲାଭ ପରେ, ଜୀବନକୁ କିପରି ଗଢ଼ିବାକୁ ହେବ ଲୁଇସ ତାହା ଜାଣିପାରିଲେ । ବିଦ୍ୟା ଶିକ୍ଷା ତାଙ୍କୁ ଆହୁରି ଆତ୍ମନିର୍ଭରଶୀଳ କରିଦେଲା । ଏହି ପାଠପଢ଼ା ତାଙ୍କର ଭବିଷ୍ୟତ ଜୀବନର ସହାୟକ ହେଲା । ବିଦ୍ୟା ଶିକ୍ଷା କରି ନଥିଲେ ବ୍ରେଇଲେ ଆବିଷ୍କାରକ ରୂପେ ସଂସାରର ମହାନ ବ୍ୟକ୍ତିମାନଙ୍କ ମଧ୍ୟରେ ଏକ ମହତ୍ତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରିପାରି ନ ଥାନ୍ତେ ।

ବ୍ରେଇଲେ ଅନ୍ଧ ହେଲେ ମଧ୍ୟ ତାଙ୍କର ପ୍ରତିଭା ଥିଲା ଅସାଧାରଣ । ତାଙ୍କର ବିଚକ୍ଷଣ ବୁଦ୍ଧି ଓ ଅସାଧାରଣ ସ୍ମରଣଶକ୍ତି ବିଦ୍ୟାଳୟର ଶିକ୍ଷକ ତଥା ଅନ୍ୟମାନଙ୍କୁ ବିସ୍ମିତ କରିଦେଲା । ତାଙ୍କୁ କିପରି ଉଚ୍ଚ ଶିକ୍ଷା ଦିଆଯାଇ ପାରିବ ସେ ସମ୍ବନ୍ଧରେ ଚିନ୍ତା କରିବାକୁ ଲାଗିଲେ । କାରଣ ସେପରି ଛୋଟ ଗ୍ରାମଟିରେ ଉଚ୍ଚ ଶିକ୍ଷାପାଇଁ କୌଣସି ସୁବିଧା ନଥିଲା । ବ୍ରେଇଲେ ମଧ୍ୟ ଉଚ୍ଚଶିକ୍ଷା ନିମନ୍ତେ ପ୍ୟାରିସ ଯିବାପାଇଁ ଆଗ୍ରହ ପ୍ରକାଶ କଲେ । ପିତା ପୁତ୍ରର ଏ ଆଗ୍ରହକୁ ପ୍ରତ୍ୟାଖ୍ୟାନ କରିପାରିଲେ ନାହିଁ । ସେ ପୁଅକୁ ପ୍ୟାରିସ ପଠାଇବା ପାଇଁ ସ୍ଥିର କଲେ ।

ପ୍ୟାରିସରେ ଅନ୍ଧମାନଙ୍କୁ ଶିକ୍ଷା ଦେବାପାଇଁ ସ୍ୱତନ୍ତ୍ର ବିଦ୍ୟାଳୟ ପ୍ରତିଷ୍ଠିତ ହୋଇଥାଏ ; କିନ୍ତୁ ସେତେବେଳେ ଅନ୍ଧ ପିଲାଟିଏ ପ୍ୟାରିସ ଯାଇ ପାଠ ପଢ଼ିବା ସହଜ ବ୍ୟାପାର ନଥିଲା । କାରଣ ସରକାରଙ୍କ ତରଫରୁ ଅନ୍ଧମାନଙ୍କୁ ଶିକ୍ଷାରେ ସାହାଯ୍ୟ କରିବାର କୌଣସି ବ୍ୟବସ୍ଥା ନଥିଲା । ମନ ଥିଲେ ଉପାୟ ଆପେ ଆପେ ଆସେ ।

୧୭୮୦ ମସିହା ବ୍ରେଇଲେଙ୍କ ଜୀବନରେ ଏକ ମହତ୍ତ୍ୱପୂର୍ଣ୍ଣ ବର୍ଷ । ଦିନେ ଫ୍ରାନ୍ସର ଜଣେ ଦୟାଳୁ ଅଫିସର ରାସ୍ତାରେ ଯାଉଥିଲେ । ଦଶଜଣ ଅନ୍ଧ ଗୋଟିଏ ସ୍ଥାନରେ ଏକତ୍ରିତ ହେବାର ସେ ଦେଖିପାରିଲେ । ଦଳେ ଲୋକ ସେମାନଙ୍କୁ ପରିହାସ କରି ଆନନ୍ଦ ଅନୁଭବ କରୁଥିଲେ । ଏହା ଦେଖି ଅଫିସର ଜଣକ ବ୍ୟଥିତ ହୋଇ ଉଠିଲେ । ସେ କିଛି ନ କହି ସେଠାରୁ ଚାଲିଗଲେ ।

ଆଉ ଦିନକର କଥା । ସେହି ଅଫିସର ଜଣକ ଗୀର୍ଜାକୁ ଯାଉଥିଲେ । ଜଣେ ଅନ୍ଧ ବାଳକ ତାଙ୍କ ଆଗରେ ହାତ ପତାଇ ଭିକ୍ଷା ମାଗିଲା । ବାଳକଟି ବଡ଼ କରୁଣ କଣ୍ଠରେ କାକୁତି ମିନତି କରିବାକୁ ଲାଗିଲା । ଅଫିସର ପଚାରି ବୁଝିପାରିଲେ, ଅନ୍ଧ ପିଲାଟିର ନିଜର କେହି ନାହାନ୍ତି । ରହିବାକୁ ଘର ବଖରାଏ ମଧ୍ୟ ନାହିଁ । ଦିନରେ ସେ ଭିକ୍ଷା କରେ । ସନ୍ଧ୍ୟା ପରେ ଯେ କୌଣସି ସ୍ଥାନରେ ଶୋଇ ରାତି କଟାଇ ଦିଏ ।

ଅଫିସର କିଛିକ୍ଷଣ ପାଇଁ ଚିନ୍ତା କଲେ । ସେ ଗୀର୍ଜାରେ ଶପଥ ନେଲେ । ଅନ୍ଧମାନଙ୍କର ଉନ୍ନତି ପାଇଁ ସେ ଜୀବନରେ କିଛି କରିବେ । ସେ ଥିଲେ ଫ୍ରାନ୍ସ ସରକାରଙ୍କର ଜଣେ ଉଚ୍ଚପଦସ୍ଥ ଅଫିସର । ତାଙ୍କର ନାମ ମୋନେସିଉର ହାଉରି । ଅନ୍ଧ ପିଲାଟିକୁ ଭିକ୍ଷା ଦେଇ ସେ ତା ଜୀବନରେ କୌଣସି ପରିବର୍ତ୍ତନ ଆଣି ପାରିବେ ନାହିଁ । ଏଣୁ ସେ ତାକୁ ସାଙ୍ଗରେ ଘରକୁ ନେଇଗଲେ । ନିଜର ସନ୍ତାନ ଭଳି ସେ ଅନ୍ଧ ପିଲାଟିକୁ ବିଦ୍ୟା ଓ ସଙ୍ଗୀତ ଶିକ୍ଷା ଦେଲେ । ଅନ୍ଧ ହେଲେ ମଧ୍ୟ ପିଲାଟି ପ୍ରତିଭାସମ୍ପନ୍ନ । ଖୁବ୍ ଅଳ୍ପ ଦିନ ମଧ୍ୟରେ ସେ ଦକ୍ଷତାର ସହିତ ସଙ୍ଗୀତ ଯନ୍ତ୍ର ବଜାଇ ସୁନ୍ଦର ଗୀତ ଗାଇ ପାରିଲା । ଅଫିସର ମନେ ମନେ ଉତ୍ଫୁଲ୍ଲିତ ହୋଇ ଉଠିଲେ । ଅନ୍ଧମାନଙ୍କ ସମ୍ବନ୍ଧରେ ତାଙ୍କର ଯାହା ଧାରଣା ଥିଲା ତାହା ସମ୍ପୂର୍ଣ୍ଣ ବଦଳିଗଲା । ସେ ବୁଝିପାରିଲେ ଅନ୍ଧମାନଙ୍କୁ ଉପଯୁକ୍ତ ଶିକ୍ଷା ଦିଆଯାଇ ପାରିଲେ ସେମାନେ ସବୁ କିଛି କରିପାରିବେ । କିନ୍ତୁ ସେମାନେ କେଉଁଠାରେ ଶିକ୍ଷା ଲାଭ କରିବେ ତାହାହିଁ ହେଲା ସମସ୍ୟା ।

ଅଫିସର ନିରାଶ ହେଲେ ନାହିଁ । ସେ କେତେକ ଧନୀ ବ୍ୟକ୍ତିଙ୍କ ସାହାଯ୍ୟରେ ଅନ୍ଧମାନଙ୍କ ପାଇଁ ଗୋଟିଏ ସ୍କୁଲ ପ୍ରତିଷ୍ଠା କରିବା ପାଇଁ ଦୃଢ଼ପ୍ରତିଜ୍ଞ ହେଲେ । ଉଦ୍ୟମ ସଫଳ ହେଲା । ଅନ୍ଧମାନଙ୍କର ଶିକ୍ଷା ନିମନ୍ତେ ସ୍କୁଲଟିଏ ପ୍ରତିଷ୍ଠିତ ହେଲା । ଅଫିସର ନିଜେ ଏ ସ୍କୁଲର ପରିଚାଳକ ହେଲେ । ପରେ ସେହି ସ୍କୁଲ ପ୍ୟାରିସର ଅନ୍ଧ ବିଦ୍ୟାଳୟ ରୂପେ ବିଶ୍ୱଖ୍ୟାତି ଅର୍ଜନ କଲା ।

ଏହି ସ୍କୁଲ ପୃଥିବୀର ସର୍ବପ୍ରଥମ ଅନ୍ଧ ବିଦ୍ୟାଳୟ । ଏ ସ୍କୁଲ ପ୍ରତିଷ୍ଠା ହେବାର ୩୦ ବର୍ଷ ପରେ ବ୍ରେଇଲେ ଏଠାରେ ପଢ଼ିବାକୁ ଆସିଲେ । ସେତେବେଳେ ଫ୍ରାନ୍ସ ବାହାରେ ମଧ୍ୟ ଅନ୍ଧମାନଙ୍କ ପାଇଁ ଏ ପ୍ରକାର କୌଣସି ବିଦ୍ୟାଳୟ ନଥିଲା ।

୧୯୧୮ ମସିହା ଫେବୃୟାରୀ ୧୫ ତାରିଖ ଦିନ ବ୍ରେଇଲେ ପିତାଙ୍କ ସହିତ ଟ୍ରେନରେ ପ୍ୟାରିସ ଯାତ୍ରା କଲେ । ସେତେବେଳେ ତାଙ୍କର ବୟସ ଏଗାର ବର୍ଷ । ସ୍କୁଲରେ ଯୋଗ ଦେବା ପରେ ସ୍କୁଲ ତରଫରୁ ତାଙ୍କୁ ନାଳ ରଙ୍ଗର ସୁନ୍ଦର ପୋଷାକ ଯୋଗାଇ ଦିଆଗଲା । ପ୍ରଥମେ ପ୍ରଥମେ ବ୍ରେଇଲେ ନିଜକୁ ବଡ ନିଃସଙ୍ଗ ମନେକଲେ । କିନ୍ତୁ ନୂତନ ସ୍ଥାନର ପରିବେଶ ସହିତ ପରିଚିତ ହେବାପରେ ଏହି ନିଃସଙ୍ଗତା ଆପେ ଆପେ ଦୂର ହୋଇଗଲା । ଅନ୍ଧମାନଙ୍କ ନିମନ୍ତେ ଏ ସ୍କୁଲଟିର ଖ୍ୟାତିଥିଲେ ମଧ୍ୟ ସ୍କୁଲଟି ଅସ୍ୱାସ୍ଥ୍ୟକର ପରିବେଶ ମଧ୍ୟରେ ଥିଲା ।

ବିଦ୍ୟାଳୟରେ ବ୍ରେଇଲେଙ୍କର ବହୁ ସାଥି ଥିଲେ । ବ୍ରେଇଲେ ବୟସରେ ସମସ୍ତଙ୍କ ଠାରୁ ଛୋଟ । ସ୍ଥାନଟି ତାଙ୍କ ନିକଟରେ ନୂଆ ; ସେ ସମୟ ସମୟରେ ବାଟବଣା ମଧ୍ୟ ହୋଇ ଯାଉଥିଲେ । ସେ ସ୍କୁଲର କଠୋର ନିୟମବୃନ୍ଦକୁ ମାନି ଚଳୁଥିଲେ । କିନ୍ତୁ ଘରର ମମତା ଏଠାରେ କାହୁଁ ମିଳିବ ।

ବ୍ରେଇଲେଙ୍କର ଅନ୍ତରଙ୍ଗ ବନ୍ଧୁ ଥିଲେ ଗ୍ରେବିୟେଲ ଗାଉଥିଅର । ବ୍ରେଇଲେଙ୍କର ମନ ଖୁସୀ ରଖିବା ପାଇଁ ସେ ସର୍ବଦା ଚେଷ୍ଟା କରୁଥିଲେ । ଦୁହେଁ ଅନ୍ଧ। କେହି କାହାରିକୁ ଦେଖିବାର ଉପାୟ ନାହିଁ । କେବଳ ବାର୍ତ୍ତାଳାପ ମାଧ୍ୟମରେ ଦୁହିଁଙ୍କର ବନ୍ଧୁତ୍ୱ ନିବିଡ଼ ହୋଇ ଆସିଲା । ଏ ଦୁହେଁ ଗୋଟିଏ ଘରେ ରହୁଥିଲେ ।

ବ୍ରେଇଲେ ପ୍ୟାରିସ ଆସିବା ପୂର୍ବରୁ ଯେଉଁ ସ୍କୁଲରେ ପଢୁଥିଲେ ସେ ସ୍କୁଲ ଠାରୁ ପ୍ୟାରିସ ସ୍କୁଲର ଶିକ୍ଷା ପ୍ରଣାଳୀ ସମ୍ପୂର୍ଣ୍ଣ ପୃଥକ ଥିଲା । ଛାତ୍ରମାନଙ୍କର ପଢ଼ା ଉପରେ ଶିକ୍ଷକ କଠୋର ଦୃଷ୍ଟି ଦେଉଥିଲେ । କିନ୍ତୁ ଏଠାରେ ଲେଖାଲେଖି ଯଥେଷ୍ଟ କମ୍ ଥିଲା । ବ୍ରେଇଲେଙ୍କର ମନରେ ନୈରାଶ୍ୟ ଜାତ ହେଲା । ଲେଖିବାପାଇଁ ତାଙ୍କର ବିଶେଷ ଆଗ୍ରହ ଥିଲା । ବହି ସଂଖ୍ୟା କମ । ସେଗୁଡ଼ିକ ବଡ଼ ବଡ ଅକ୍ଷରରେ ଲେଖାଯାଇ ଥିଲା । ଅକ୍ଷରଗୁଡ଼ିକୁ ମାପଚୁପ କରି ପଢ଼ିବାକୁ ପଡୁଥିଲା; କିନ୍ତୁ ଗୋଟିଏ ଧାଡ଼ିର ଶେଷରେ ପହଞ୍ଚିଲା ବେଳକୁ ଛାତ୍ରମାନେ ପ୍ରଥମରୁ ସବୁ କିଛି ଭୁଲି ଯାଉଥିଲେ । ଶୀଘ୍ର ପଢ଼ିବା ମଧ୍ୟ ସମ୍ଭବ ହେଉ ନଥିଲା । ଏଣୁ କେହି କେହି ପଢ଼ିବାକୁ ଚେଷ୍ଟା କରୁ ନଥିଲେ । ଶିକ୍ଷକ ଯାହା କହୁଥିଲେ ତାହା ଶୁଣି ମନେରଖିବାକୁ ଚେଷ୍ଟା କରୁଥିଲେ ।

ଏ ସ୍କୁଲରେ ଶିକ୍ଷା ଦେବାପାଇଁ ଥାଆନ୍ତି ଜଣେ ଶିକ୍ଷକ ଓ ଜଣେ ଶିକ୍ଷୟିତ୍ରୀ । ଛାତ୍ରମାନଙ୍କ ଭିତରେ ଯେଉଁମାନେ ବିଶେଷ ବୁଦ୍ଧିମାନ ସେହିମାନଙ୍କୁ ଶିକ୍ଷା ଦିଆଯାଏ । ଏହି ବିଶେଷ ବୁଦ୍ଧିମାନ ଛାତ୍ରମାନଙ୍କୁ ପ୍ରଫେସର କୁହାଯାଏ । ଏହିମାନେ ସ୍କୁଲର ଅନ୍ୟ ଛାତ୍ରମାନଙ୍କୁ ପଢ଼ାନ୍ତି । ଯେଉଁ ଛାତ୍ରମାନେ ପ୍ରଫେସରଙ୍କ କଥାକୁ ଶୀଘ୍ର ବୁଝିପାରନ୍ତି ସେମାନେ ହୁଅନ୍ତି ରିପିଟର । ରିପିଟରମାନେ ଅନ୍ୟ ଛାତ୍ରମାନଙ୍କୁ ପଢ଼ାନ୍ତି । ଗୋଟିଏ ବିଷୟ ସ୍କୁଲରେ ବୁଝିଥିବା ପର୍ଯ୍ୟନ୍ତ ରିପିଟରମାନେ ପଢ଼ାନ୍ତି ।

ବ୍ରେଇଲେ ଶିକ୍ଷାରେ ଛାତ୍ରମାନଙ୍କ ମଧ୍ୟରେ ଅଗ୍ରଣୀ ଥିଲେ । ସେ ବୁଦ୍ଧିମାନ, ଚତୁର ଓ ଅସାଧାରଣ ରଚନା ଶକ୍ତିର ଅଧିକାରୀ ଥିଲେ । ସେ କୌଣସି ପ୍ରତିଯୋଗିତାରେ ସେ ପ୍ରଥମ ସ୍ଥାନ ଅଧିକାର କରି ବହୁ ପୁରସ୍କାର ଲାଭ କରିଥିଲେ । ବାଦ୍ୟଯନ୍ତ୍ର ସେ ଅତି ବିଚକ୍ଷଣତାର ସହିତ ବଜାଇ ପାରୁଥିଲେ । ଏସବୁ ପରେ ସେ ସବୁ ସମୟରେ କିଛି ନୂଆ ଜିନିସ ତିଆରି କରିବାକୁ ଚେଷ୍ଟା କରୁଥିଲେ । ସ୍କୁଲରେ ଜୋତା ତିଆରି କରିବାର କାରଖାନା ଥିଲା । ବ୍ରେଇଲେ ସେହି କାରଖାନା ଦାୟିତ୍ୱରେ ଥିଲେ । ତାଙ୍କ ନିର୍ମିତ ଜୋତା ଏତେ ସୁନ୍ଦର ହେଲା ଯେ, ପ୍ୟାରିସର ଲୋକମାନେ ତାକୁ ଆଗ୍ରହର ସହିତ କିଣିଲେ ।

ବ୍ରେଇଲେ କେବେହେଲେ ଅଯଥା ସମୟ ନଷ୍ଟ କରୁ ନଥିଲେ । ଅବସର ସମୟରେ ସେ କିଛି ନୂଆ କାମ କରିବା ଆରମ୍ଭ କରି ଦେଉଥିଲେ ।

ସେ ଥରେ ଗୋଟିଏ ବାର୍ଷିକ ଉତ୍ସବରେ ଯୋଗ ଦେବା ପାଇଁ ଘରକୁ ଆସିଥିଲେ । ବାପାଙ୍କୁ କହିଲେ—"ବାପା, ସଂସାରରେ ଅନ୍ଧମାନଙ୍କର ଜୀବନ ବଡ ନିଃସଙ୍ଗ । ବହି ନଦେଖି ପାଠ ପଢ଼ିବା ଠାରୁ କଷ୍ଟ ଆଉ କିଛି ନାହିଁ ।

ଯେତେ ପଢ଼ଲେ ବି ବ୍ରେଇଲେଙ୍କ ମନରେ ସନ୍ତୋଷ ଆସୁ ନଥାଏ । ଅନ୍ୟମାନଙ୍କ ଭଳି ଜଣେ ପଣ୍ଡିତ ହେବେ ବୋଲି ଆଶା କରିପାରୁ ନଥିଲେ । ଆଖିରେ ନ ଦେଖି ବହି ନ ଦେଖି ସେ ବାଳି ପାଠ ପଢ଼ବେ ଆଉ ବିଜ୍ଞାନ ଅର୍ଜନ କରିବେ । ଏଥିନିମନ୍ତେ ସେ ଚିନ୍ତା କରିବାକୁ ଲାଗିଲେ । ସେ ଜଗତର ସମସ୍ତ ଅନ୍ଧମାନଙ୍କ ପାଇଁ ଏହି କଥା ଚିନ୍ତା କରୁଥିଲେ ।

ବ୍ରେଇଲଙ୍କର ଭାବନା ଅର୍ଥହୀନ ନଥିଲା । ଦିନେ ଚିନ୍ତା କରୁକରୁ ତାଙ୍କୁ ଏକ ଉପାୟ ଦେଖାଗଲା । ସେ ଭାବିଲେ ଏକ ଅଭିନବ ପ୍ରକାରର ବର୍ଣ୍ଣମାଳା ତିଆରି କରି ପାରିଲେ ଅନ୍ଧମାନଙ୍କର ପାଠ ପଢ଼ବା ସହଜ ହୋଇ ପାରନ୍ତା । ସେହି ମୁହୂର୍ତ୍ତରୁ ସେ ନୂତନ ପ୍ରକାରର ବର୍ଣ୍ଣମାଳା ତିଆରି କରିବା ପାଇଁ ଉଦ୍ୟମ ଆରମ୍ଭ କରିଦେଲେ ।

ଏହାପୂର୍ବରୁ ଆଉ କେତେଜଣ ଅନ୍ଧମାନଙ୍କପାଇଁ ଅକ୍ଷର ଆବିଷ୍କାର କରି-ଥିଲେ ; କିନ୍ତୁ ଏ ଅକ୍ଷର ଅନ୍ଧମାନଙ୍କ ପକ୍ଷରେ ବିଶେଷ ଉପଯୋଗୀ ନ ଥିଲା । କାରଣ ସେ ଅକ୍ଷରର ଆକାର ଅନୁଭବ କରି ପାଠପଢ଼ବା କଷ୍ଟକର ହେଉଥିଲା । ଅକ୍ଷର ଗୁଡକ, କାଠ ବା ସିସା କିମ୍ବା ଧାତୁ ନିର୍ମିତ । ତାର ଉପର ଭାଗ ତୀକ୍ଷ୍ଣ, ଏଣୁ ତାକୁ ଅଣ୍ଡାଳି ପାଠ ପଢ଼ିଲାବେଳକୁ ବହୁ ଅନ୍ଧଙ୍କର ହାତ କ୍ଷତବିକ୍ଷତ ହୋଇଗଲା । ଅକ୍ଷର ଗୁଡ଼କର ଲମ୍ବ ମଧ୍ୟ ଛଅ ଇଞ୍ଚରୁ କମ ନୁହେଁ । ବ୍ରେଇଲେ ମଧ୍ୟ ଏହି ଅକ୍ଷର ମାଧ୍ୟମରେ ଶିକ୍ଷା କରିଥିଲେ । ଏଣୁ ଏହାଦ୍ୱାର କି ଅସୁବିଧା ହେଉଛି, ସେ ସହଜରେ ଜାଣି-ପାରିଲେ ।

ନୂତନ ବର୍ଣ୍ଣମାଳା ଆବିଷ୍କାର କରିବାପାଇଁ ବ୍ରେଇଲ କଠୋର ପରିଶ୍ରମ କରିବାକୁ ଲାଗିଲେ; କିନ୍ତୁ ଏହା ସମୟସାପେକ୍ଷ । ବାପାଙ୍କ କାରଖାନାରୁ କଟା ଅଦରକାରୀ ଚମଡ଼ା ସଂଗ୍ରହ କରି ସେ ସେହି ଚମଡ଼ାକୁ କାଟି ବିଭିନ୍ନ ପ୍ରକାର ଅକ୍ଷର ଚିହ୍ନିତ କଲେ । ଧାତୁ ବଦଳରେ ସେ କାଠରେ ଅକ୍ଷର ତିଆରି କଲେ । ଅକ୍ଷର ସଂଖ୍ୟା ବହୁତ ହୋଇଗଲେ ଅନ୍ଧମାନେ ମନେରଖି ପାରିବେ ନାହିଁ । ଏଣୁ ଏପରି ଅକ୍ଷର ତିଆରି କରିବା ଆବଶ୍ୟକ ଯେପରି ଗୋଟିଏ ଅକ୍ଷର ବିଭିନ୍ନ ସ୍ଥାନରେ ବ୍ୟବହୃତ ହୋଇପାରିବ । କମ୍ ସଂଖ୍ୟକ ଅକ୍ଷରରେ ଯେପରି ପାଠପଢ଼ା ହୋଇପାରିବ ତାହାହିଁ ହେଲା ବ୍ରେଇଲେଙ୍କର ଚିନ୍ତା ।

ବ୍ରେଇଲେ ନୂତନ କାର୍ଯ୍ୟରେ ଲାଗିପଡ଼ିଲେ । ଏହି ସମୟରେ ତାଙ୍କର କ୍ୟାପ୍‌ଟେନ ଚାର୍ଲସଙ୍କ ସହିତ ପରିଚୟ ହେଲା । କ୍ୟାପ୍‌ଟେନ ଚାର୍ଲସ ନେପୋ-ଲିୟନଙ୍କର ପୂର୍ବତନ ଅଫିସର । ସେ ନେପୋଲିୟନଙ୍କ ସହିତ ଯୁଦ୍ଧରେ ଭାଗ ନେଇ-ଥିଲେ । ଯୁଦ୍ଧରେ ସୁବିଧାପାଇଁ କମା, ଡ୍ୟାସ, ଓ ବିନ୍ଦୁ ଇତ୍ୟାଦି ଛୋଟ ଛୋଟ ଚିହ୍ନ ବ୍ୟବହାର କରଯାଉଥିଲା । ଏ ଚିହ୍ନଗୁଡ଼ିକର ବ୍ୟବହାର କ୍ୟାପ୍‌ଟେନ ଚାର୍ଲସ ବ୍ରେଇଲେଙ୍କୁ ବୁଝାଇଦେଲେ ।

ଏ ଚିହ୍ନଗୁଡ଼ିକ ସାମରିକ କ୍ଷେତ୍ରରେ ବ୍ୟବହାରପାଇଁ ସୁବିଧାଜନକ ; କିନ୍ତୁ ଅନ୍ଧମାନଙ୍କପାଇଁ ଏହା ବିଶେଷ ସୁବିଧାଜନକ ହେବନାହିଁ ବୋଲି ବ୍ରେଇଲେ ଜାଣି-ପାରିଲେ । ତଥାପି ଏ ଧରଣର ଚିହ୍ନ ସୃଷ୍ଟିକରି ଅନ୍ଧମାନଙ୍କୁ ସହଜରେ ଶିକ୍ଷାଦେଇ ହେବ । ସେ ଏହି ଚିହ୍ନଗୁଡ଼ିକୁ ବାରମ୍ବାର ପରୀକ୍ଷା ନିରୀକ୍ଷା କରିବାକୁ ଲାଗିଲେ ।

ଯେତେ ପରୀକ୍ଷା କଲେମଧ୍ୟ ବ୍ରେଇଲଙ୍କର ମନରେ ସନ୍ତୋଷ ଆସିଲାନାହିଁ । ସେ ଥରକୁ ଥର ଚିହ୍ନ ବଦଳାଇବାରେ ଲାଗିଲେ । ରାତ୍ରି ଭୋଜନପରେ ବ୍ରେଇଲେଙ୍କ ସଙ୍ଗୀମାନେ ଶୋଇପଡନ୍ତି । କିନ୍ତୁ ବ୍ରେଇଲେ ନ ଶୋଇ ନୂତନ ବର୍ଣ୍ଣମାଳା ତିଆରି କରିବାରେ ଲାଗିପଡନ୍ତି ।

ଏହି ପରୀକ୍ଷା ଯେପରି ଶେଷ ହେବନାହିଁ । ବର୍ଷପରେ ବର୍ଷ ବିତିଗଲା । ତଥାପି ପରୀକ୍ଷା ଚାଲିଥାଏ । ଯେତେବେଳେ ବ୍ରେଇଲେଙ୍କର ବୟସ ମାତ୍ର ୧୬ ବର୍ଷ । ସେହି ବୟସରେ ସେ ସାଙ୍କେତିକ ବର୍ଣ୍ଣମାଳା ସମ୍ପୂର୍ଣ୍ଣକରି ଗଢ଼ିପାରିଥିଲେ । ଏଥିନିମନ୍ତେ ବ୍ରେଇଲେଙ୍କୁ ଅକ୍ଳାନ୍ତ ପରିଶ୍ରମ କରିବାକୁ ପଡ଼ିଥିଲା ।

ବର୍ଣ୍ଣମାଳା ତିଆରି ଶେଷ ହୋଇଗଲା ସତ, ତଥାପି ବ୍ରେଇଲେଙ୍କ ମନରେ ସନ୍ତୋଷ ଆସିଲାନାହିଁ । ଅନ୍ଧମାନଙ୍କର ଅକ୍ଷର ଶିକ୍ଷାକୁ ଆହୁରି ସହଜ କରିଦେବାପାଇଁ ସେ ଇଚ୍ଛା କରୁଥିଲେ । ଅବଶ୍ୟ ଏ ବର୍ଣ୍ଣମାଳାର ଡଟ୍‌ଗୁଡ଼ିକ ଅନ୍ଧମାନଙ୍କର ଶିକ୍ଷାନିମନ୍ତେ ବିଶେଷ ସାହାଯ୍ୟକାରୀ ହେଲା । କିନ୍ତୁ ଡ୍ୟାସଗୁଡ଼ିକ ବିଶେଷ ଉପଯୋଗୀ ମନେହେଲା-ନାହିଁ । ଏଣୁ ସେ ଡ୍ୟାସ ସ୍ଥାନରେ ଡଟ୍ ବ୍ୟବହାର କଲେ ; କିନ୍ତୁ ଡଟ୍‌ସର ସଂଖ୍ୟା ବହୁତ ବଢ଼ିଗଲା । ଏଥିନିମନ୍ତେ ଅଧିକ ସ୍ଥାନ ମଧ୍ୟ ଆବଶ୍ୟକ ହେଲା । ଏଣୁ ଡଟ୍‌ସ ଗୁଡ଼ିକର ସଂଖ୍ୟା କମାଇଦେବା କଥା ଚିନ୍ତାକଲେ ବ୍ରେଇଲେ ।

ଯେତେବେଳେ ବ୍ରେଇଲେଙ୍କର ବୟସ ୨୦ ବର୍ଷ । ସେତିକିବେଳେ ତାଙ୍କର ବର୍ଣ୍ଣମାଳାର ଏକ ବିଚିତ୍ର ପରିବର୍ତ୍ତନ ଘଟିଲା । ସମସ୍ତ ସାଙ୍କେତିକ ବର୍ଣ୍ଣମାଳାରେ ସେ କେବଳ ଛଅଟି ଡଟ୍‌ସ ସାହାଯ୍ୟରେ ଅକ୍ଷର ଶିକ୍ଷା ଦେବାପାଇଁ ଚେଷ୍ଟାକଲେ । ଏହି

ଛଅଟି ଡଟ୍‌ର ସାହାଯ୍ୟରେ ସମସ୍ତ ବର୍ଣ୍ଣମାଳା, ମାତ୍ରା ପ୍ରଭୃତି ପ୍ରକାଶ କରଯାଇ ପାରିଲା । କୋଡ୍ ତିଆରି ଶେଷ ହେବାପରେ ବ୍ରେଇଲେ ନିଜ ଅଙ୍ଗୁଳି ସାହାଯ୍ୟରେ ତାହା ଭଲଭାବରେ ପରୀକ୍ଷା କରିନେଲେ । ୧୮୩୪ ମସିହାରେ ଅନ୍ଧବର୍ଣ୍ଣମାଳା ଗଠନକାର୍ଯ୍ୟ ସମ୍ପୂର୍ଣ୍ଣ ଶେଷହେଲା । ଏହାପରେ ବ୍ରେଇଲେ ବହି ତିଆରିକଲେ ।

ଏହି ସମୟରେ ତାଙ୍କର ଝିଗିନାର ଅନ୍ଧଶିକ୍ଷାର ପ୍ରସାରପାଇଁ ଉଦ୍ୟମ ଚଳା-ଇଲେ । ସେ ଏଥିନିମନ୍ତେ ଯେଉଁ ଅନୁଷ୍ଠାନ ଗଢ଼ଲେ ସେଥିରେ ବ୍ରେଇଲେଙ୍କୁ ଜୁନିୟର ଶିକ୍ଷକରୂପେ ନିଯୁକ୍ତି ମିଳିଗଲା । ଏହାଫଳରେ ଅନ୍ଧଶିକ୍ଷାର ଉନ୍ନତି କରିବାପାଇଁ ସେ ଅଧିକ ସୁଯୋଗ ଲାଭକଲେ । ବ୍ରେଇଲେ ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ଅନ୍ଧମାନଙ୍କର ମଙ୍ଗଳପାଇଁ ଉଦ୍ୟମ କରିଥିଲେ ।

ବ୍ରେଇଲେଙ୍କର ଶିକ୍ଷାପଦ୍ଧତି ଥିଲା ସମ୍ପୂର୍ଣ୍ଣ ପୃଥକ । ସେ ଛାତ୍ରମାନଙ୍କୁ ନୂତନ ପଦ୍ଧତିରେ ଇତିହାସ, ଭୂଗୋଳ, ଅଙ୍କ, ଫରାସୀ, ବ୍ୟାକରଣ ଓ ସଙ୍ଗୀତ ବିଦ୍ୟା ଶିକ୍ଷାଦେଲେ ।

ବ୍ରେଇଲେ ଛାତ୍ରମାନଙ୍କ ଉପରେ କେବେହେଲେ ବିରକ୍ତ କିମ୍ବା କ୍ରୁଦ୍ଧ ହେଉ ନ ଥିଲେ । ଜଣେ ଛାତ୍ର ନ ବୁଝିବା ପର୍ଯ୍ୟନ୍ତ ସେ ତାକୁ ବାରମ୍ବାର ବୁଝାଉଥିଲେ । ଶୃଙ୍ଖଳା ରକ୍ଷାପ୍ରତି ବ୍ରେଇଲେ ବିଶେଷ ଦୃଷ୍ଟି ଦେଉଥିଲେ । ଏହି ସମୟରେ ବ୍ରେଇଲେ ବହି ଲେଖାଲେଖି ମଧ୍ୟ ଆରମ୍ଭ କଲେ । ଡଟ୍ ବର୍ଣ୍ଣମାଳା ବ୍ୟବହାର କରି ସେ ଅନ୍ଧମାନଙ୍କ ପାଇଁ ପାଠ୍ୟ ପୁସ୍ତକ ଲେଖିଲେ । ଛାତ୍ରମାନଙ୍କୁ ତାଙ୍କର ବହି ବିଶେଷ ସାହାଯ୍ୟ କଲା । ଏଥର ସଙ୍ଗୀତ ଦିଗକୁ ବ୍ରେଇଲେଙ୍କର ଦୃଷ୍ଟି ପଡ଼ିଲା । ସେ ଛାତ୍ରମାନଙ୍କୁ ସହଜରେ ସଙ୍ଗୀତ ଶିକ୍ଷା ଦେବାପାଇଁ ଏକ ପ୍ରଣାଳୀ ବାହାର କରିବା ପାଇଁ ଚେଷ୍ଟାକଲେ ; କିନ୍ତୁ ସଙ୍ଗୀତ ଶିକ୍ଷାର ନୂତନ ପ୍ରଣାଳୀ ବାହାର କରିବା ସହଜ କଥାନୁହେଁ ।

ବ୍ରେଇଲେ କିନ୍ତୁ ନିରାଶ ହେଲେନାହିଁ । ସେ ଏଥି ନିମନ୍ତେ ଅନବରତ ଉଦ୍ୟମ କରିବାକୁ ଲାଗିଲେ । ତାଙ୍କର ଏହି ନିଷ୍ଠାପର ଉଦ୍ୟମ ଶେଷରେ ସଫଳ ହେଲା । ସେ ଅନ୍ଧମାନଙ୍କୁ ସଙ୍ଗୀତ ଶିକ୍ଷା ଦେବାପାଇଁ ଛଅଟି ଡଟ୍ ନିର୍ମାଣ କଲେ । ଏହା-ସାହାଯ୍ୟରେ ଅନ୍ଧମାନେ ବିଭିନ୍ନ ଚିହ୍ନି ବାଦ୍ୟଯନ୍ତ୍ର ବଜାଇ ପାରିବେ ।

ବ୍ରେଇଲେଙ୍କର ସୁନ୍ଦର ରୂପ, ହସଲଗା ମୁହଁ, ଦୀର୍ଘ ଶରୀର, କୁଞ୍ଚିତ କେଶ ଓ ଆନନ୍ଦମୟ ମନ ସମସ୍ତଙ୍କୁ ମୁଗ୍ଧ କରି ପାରୁଥିଲା । ସେ ନିଜ ଦରମାରେ ହାରମୋନିୟମ ଟିଏ କିଣିଲେ । ସଙ୍ଗୀତ ବିଦ୍ୟାରେ ଅସାଧାରଣ ଦକ୍ଷତା ହାସଲକରି ବ୍ରେଇଲେ ପ୍ୟାରିସର ବିଶିଷ୍ଟ ସଙ୍ଗୀତଜ୍ଞମାନଙ୍କ ମଧ୍ୟରେ ଏକ ମହତ୍ତ୍ୱପୂର୍ଣ୍ଣ ସ୍ଥାନ ଅଧିକାର

କରିଥିଲେ । ସେତେବେଳେ ଡକ୍ଟର ପିଗିନାରଙ୍କ ଭଉଣୀ ପ୍ୟାରିସରେ ରହୁଥାଆନ୍ତି । ବ୍ରେଇଲେ ବିଭିନ୍ନ ଥିଏଟରରେ ବାଦ୍ୟଯନ୍ତ୍ର ବଜାଇବା ପାଇଁ ନିମନ୍ତ୍ରଣ ପାଇଲେ । ତାଙ୍କର ବାଦ୍ୟଯନ୍ତ୍ର ବଜାଇବା ଶ୍ରୋତାମାନଙ୍କୁ ମୁଗ୍ଧକଲା । ପ୍ୟାରିସବାସୀ ପ୍ରତ୍ୟେକଙ୍କ ମୁହଁରେ ବ୍ରେଇଲେଙ୍କର ପ୍ରଶଂସା ଶୁଣାଗଲା ।

ବ୍ରେଇଲେ ଥିଏଟର ଦଳରେ ମିଶି ବାଦ୍ୟବଜାଇବାକୁ ଆଦୌ ପସନ୍ଦ କରୁ ନ ଥିଲେ । ତଥାପି ସେ ପ୍ୟାରିସର ବିଖ୍ୟାତ ଥିଏଟର ଦଳଗୁଡ଼ିକରେ ବାଦ୍ୟବଜାଇ ଯଥେଷ୍ଟ ସୁନାମ ଅର୍ଜନ କଲେ । କେବଳ ସେତିକି ନୁହେଁ । ପ୍ୟାରିସର ତିନିଟି ଚର୍ଚ୍ଚରେ ସଙ୍ଗୀତ ପରିଚାଳକ ରୂପେ ତାଙ୍କୁ ନିଯୁକ୍ତି ମିଳିଲା । ସଙ୍ଗୀତରେ ଭାଗ ନେବାପରେ ବ୍ରେଇଲେଙ୍କର ଆର୍ଥିକ ଉନ୍ନତି ମଧ୍ୟ ଘଟିଲା । ସେ ବହୁଅର୍ଥ ଉପାର୍ଜନ କଲେ । କିନ୍ତୁ ସେ ସମସ୍ତ ଧନ ଦରିଦ୍ର ଅନ୍ଧ ଛାତ୍ରମାନଙ୍କୁ ସାହାଯ୍ୟ କରିବାରେ ବ୍ୟୟ କରିବାକୁ ଲାଗିଲେ । ଅନ୍ୟର ଦୁଃଖ ଦେଖିଲେ ସେ କାତର ହୋଇପଡୁଥିଲେ । ଅକୁଣ୍ଠିତ ଚିତ୍ତରେ ସାହାଯ୍ୟ କରିବାପାଇଁ ଆଗେଇ ଯାଉଥିଲେ । ତାଙ୍କର ସଙ୍ଗୀତରେ ଅସାଧାରଣ ଦକ୍ଷତା ହେତୁ ପୁଣି ଦୁଇଟି ଚର୍ଚ୍ଚରେ ସଙ୍ଗୀତ ପରିଚାଳକ ରୂପେ ତାଙ୍କୁ ନିଯୁକ୍ତି ମିଳିଲା । ସେ ଏହି ଅର୍ଥ ତତ୍ ସାହାଯ୍ୟରେ ବହି ଛାପିବାରେ ବିନିଯୋଗ କଲେ । ଅନ୍ଧ ଛାତ୍ରମାନେ କିପରି ବହି ସାହାଯ୍ୟରେ ପାଠ ପଢ଼ିପାରିବେ ଓ ସଙ୍ଗୀତ ଶିକ୍ଷାପାଇଁ ସେ ଦୁଇଟି ପ୍ରଣାଳୀ ଆବିଷ୍କାର କରିପାରିଥିଲେ । ଏଥର ଚିନ୍ତାହେଲା – ଅନ୍ଧମାନଙ୍କ ପାଇଁ କିପରି ସର୍ବହାସ୍ତ ପ୍ରଣାଳୀ ବାହାର କରିବେ ।

ହଠାତ ବ୍ରେଇଲେଙ୍କର ମନରେ ଦୁଶ୍ଚିନ୍ତା ଉଦୟ ହେଲା । ସେ ବୁଝିପାରିଲେ ଅନ୍ଧ ଛାତ୍ରମାନେ ତାଙ୍କର ପ୍ରଣାଳୀ ଅନୁସରଣ କରି ପାଠପଢ଼ିବାରେ କଷ୍ଟ ଅନୁଭବ କରୁଛନ୍ତି । ପୃଥିବୀର ସବୁ ଦେଶର ଛାତ୍ର ତାଙ୍କର ପ୍ରଣାଳୀ ସହଜରେ ଅନୁସରଣ କରିପାରିଲେ ନାହିଁ । ଏହା ହେଲା ଏକ ସମସ୍ୟା । ସ୍କୁଲରେ ବ୍ରେଇଲେଙ୍କର ପ୍ରଣାଳୀ ଅନୁସରଣ କରିବାପାଇଁ ଡକ୍ଟର ପିଗିନାର ନିର୍ଦ୍ଦେଶ ଦେଲେ । କିନ୍ତୁ ସ୍କୁଲ ବାହାରେ ରହି ପଢୁଥିବା ଅନ୍ଧମାନେ ଏ ପ୍ରଣାଳୀ ବୁଝିପାରିଲେ ନାହିଁ । ଫଳରେ ନାନା ଅସୁବିଧା ସୃଷ୍ଟି ହେଲା । ସରକାରୀ ଅନୁଷ୍ଠାନରେ ଏ ପ୍ରଣାଳୀର ବ୍ୟବହାର ବନ୍ଦ କରି ଦେବାକୁ ସରକାର ଆଦେଶ ଦେଲେ । କିନ୍ତୁ ଡକ୍ଟର ପିଗିନାର ଏ ପ୍ରଣାଳୀକୁ ଭଲ ପାଉଥିଲେ । ସେ ବ୍ରେଇଲେଙ୍କ ନାମରେ ଏକ ଇତିହାସ ସଂକଳନ କରିବାକୁ ଉଦ୍ୟମ କରୁଥିବା ସମୟରେ ସରକାରୀ ନିର୍ଦ୍ଦେଶ ଅବମାନନା ଅଭିଯୋଗରେ ତାଙ୍କୁ କାର୍ଯ୍ୟରୁ ଅନ୍ତର କରିଦିଆଗଲା । ବିରୋଧୀଦଳ ବ୍ରେଇଲେଙ୍କୁ ବିପଦରେ ପକାଇବା ପାଇଁ ଚେଷ୍ଟା-କଲେ । ବ୍ରେଇଲେ ସାମାନ୍ୟ ବିବ୍ରତ ହେଲେମଧ୍ୟ ନିଜ କର୍ତ୍ତବ୍ୟରେ ତ୍ରୁଟି କଲେ ନାହିଁ ।

କି ପ୍ରକାର ପ୍ରଣାଳୀ ବ୍ୟବହାରକଲେ ସମସ୍ତେ ସହଜରେ ତାହା ଉପଯୋଗ କରିପାରିବେ, ବ୍ରେଇଲେ ଦିନରାତି ସେଇକଥା ଚିନ୍ତା କରିବାକୁ ଲାଗିଲେ । ସ୍କୁଲରେ ବ୍ରେଇଲେଙ୍କର ପ୍ରଣାଳୀର ବିରୋଧ କରାଗଲାପରେ ଛାତ୍ରମାନେ ଅନ୍ୟ ପ୍ରଣାଳୀ ଆଦୌ ଅନୁସରଣ କରିପାରିଲେ ନାହିଁ । ଏଣୁ ଛାତ୍ର ଆନ୍ଦୋଳନ ଆରମ୍ଭହେଲା । ସେମାନେ ପୁଣି ବ୍ରେଇଲେଙ୍କର ପ୍ରଣାଳୀ ଅନୁସାର ଶିକ୍ଷା ଦିଆଯିବାପାଇଁ ଦାବୀକଲେ । ପ୍ରତିଦିନ ବହୁ ଛାତ୍ର ବ୍ରେଇଲେଙ୍କ ଘରକୁ ଆସି ତାଙ୍କ ପ୍ରଣାଳୀରେ ଗୋପନରେ ଶିକ୍ଷା କରିବାକୁ ଲାଗିଲେ । ବ୍ରେଇଲେ ବୁଝିପାରିଲେ ଏହା ସ୍କୁଲ ନିୟମର ବିରୋଧୀ । ତଥାପି ସେ ଛାତ୍ରମାନଙ୍କର ଆଗ୍ରହ ଦେଖି ନିଜ ପ୍ରଣାଳୀରେ ସେମାନଙ୍କୁ ଶିକ୍ଷାଦେବାକୁ ଲାଗିଲେ । ବ୍ରେଇଲେଙ୍କର ଘର ଗୋଟିଏ ଛୋଟ ସ୍କୁଲରେ ପରିଣତହେଲା । ଶେଷରେ ସ୍କୁଲର ଅଧ୍ୟକ୍ଷ ଡେଫ୍ୟ ଏ କଥା ଜାଣିପାରିଲେ । ସେ ଦିନେ ବ୍ରେଇଲଙ୍କ ଘରକୁ ଆସି ପିଲାମାନେ ପାଠ ପଢୁଥିବାର ଦେଖିପାରିଲେ ।

ବ୍ରେଇଲେ ଧରାପଡ଼ିଲେ ସତ କିନ୍ତୁ ତାଙ୍କର କିଛି କ୍ଷତିକରିବା ସମ୍ଭବ ହେଲାନାହିଁ । ଡକ୍ଟର ଗଉଡେଟ ଥିଲେ ପ୍ରଧାନ ଶିକ୍ଷକ । ସେ ବ୍ରେଇଲେଙ୍କୁ ଗଭୀର ଶ୍ରଦ୍ଧାକରୁଥିଲେ । ସେ ପୁଣି ସ୍କୁଲରେ ବ୍ରେଇଲେଙ୍କର ବର୍ଣ୍ଣମାଳା ପ୍ରବର୍ତ୍ତନ କରିବାକୁ ଚେଷ୍ଟାକଲେ ।

୧୯୪୭ ଖ୍ରୀଷ୍ଟାବ୍ଦରେ ପୁଣି ଏକ ସରକାରୀ ଆଦେଶନାମା ଜାରୀ କରାଗଲା । ଏହି ଆଦେଶନାମା ଅନୁଯାୟୀ ଛାତ୍ରମାନଙ୍କୁ ପୁଣି ବ୍ରେଇଲେ ପ୍ରଣାଳୀରେ କ୍ଲାସରେ ଶିକ୍ଷା ଦିଆଗଲା ।

ବ୍ରେଇଲେଙ୍କର ଖ୍ୟାତି ଦିନକୁଦିନ ବୃଦ୍ଧିପାଇଲା; କିନ୍ତୁ ଏହି ସମୟରେ ସେ ବାରମ୍ବାର ରୋଗଗ୍ରସ୍ତ ହୋଇପଡ଼ିଲେ । ମାତ୍ର ଛତିଶ ବର୍ଷ ବୟସରେ ସେ ରୋଗାକ୍ରାନ୍ତ ହେଲେ । ଏ ରୋଗ ଆଜୀବନ ତାଙ୍କୁ ଗ୍ରାସ କରି ରହିଲା । ଏହାଫଳରେ ବ୍ରେଇଲେଙ୍କର ସ୍ୱାସ୍ଥ୍ୟ ଭାଙ୍ଗିପଡ଼ିଲା ।

ବ୍ରେଇଲେଙ୍କର ବୟସ ସେତେବେଳେ ୩୦ ବର୍ଷ । ଏହି ବୟସରେ ଯକ୍ଷ୍ମାରୋଗ ତାଙ୍କୁ ଗ୍ରାସ କରିଥିଲା । ସେତେବେଳେ ଯକ୍ଷ୍ମା ରୋଗର ଭଲଚିକିତ୍ସା ପ୍ରଣାଳୀ ଆବିଷ୍କୃତ ହୋଇ ନ ଥାଏ । ଏଣୁ ରୋଗ ବୃଦ୍ଧିପାଇଲା । ୧୮୪୪ ଖ୍ରୀଷ୍ଟାବ୍ଦରେ ସେ ଏପରି ଦୁର୍ବଳ ହୋଇପଡ଼ିଲେ ଯେ, କ୍ଲାସରେ ପାଠପଢ଼ାଇବା ମଧ୍ୟ କଷ୍ଟକର ବୋଧହେଲା ।

ଏହିଭଳି ରୋଗଗ୍ରସ୍ତ ଅବସ୍ଥାରେ ବ୍ରେଇଲେ ସମ୍ପୂର୍ଣ୍ଣ ବାରବର୍ଷ ସେହି ଅନୁଷ୍ଠାନର ଛାତ୍ରମାନଙ୍କୁ ଶିକ୍ଷାଦେଲେ; କିନ୍ତୁ ପ୍ରତିମୁହୂର୍ତ୍ତରେ ସେ ନିଜର ମୃତ୍ୟୁ ଆଶଙ୍କା କରୁଥାଆନ୍ତି ।

୧୮୫୧ ମସିହା ଡ଼ିସେମ୍ବର ମାସରେ ବ୍ରେଇଲେଙ୍କ ଅନ୍ଧ ବର୍ଣ୍ଣମାଳାର ଆବିଷ୍କାରକ ରୂପେ ପୁରସ୍କାର ଦେବାପାଇଁ ଫରାସୀ ସରକାରଙ୍କୁ ଆବେଦନ କରଯାଇଥାଏ; କିନ୍ତୁ ଏତିକିବେଳେ ବ୍ରେଇଲେଙ୍କର ରୋଗ ଭୟଙ୍କର ହୋଇ ଉଠିଲା । ସେ ଆଉ ଶଯ୍ୟାରୁ ଉଠିଲେ ନାହିଁ । ଶଯ୍ୟାପାଖରେ ତାଙ୍କର ଭାଇ, ଡକ୍ଟର ପିଗିନାର ପ୍ରଭୃତି ଉପସ୍ଥିତ ଥିଲେ । ବ୍ରେଇଲେ କହିଲେ –'ମୁଁ ଆଉ କେତୋଟି ମୁହୂର୍ତ୍ତ ପରେ ଏ ମର ସଂସାର ଛାଡ଼ ଚାଲିଯିବି; କିନ୍ତୁ ମୋର ଚିର ପୋଷିତ ଆଶା ପୂର୍ଣ୍ଣ ହୋଇଛି । ମୁଁ ଦେଖିପାରୁଛି ଏକ ଉଜ୍ଜ୍ୱଳ ଆଲୋକ ଶିଖା ।"

ବ୍ରେଇଲେଙ୍କର ଧର୍ମବିଶ୍ୱାସ ଜୀବନର ଶେଷ ମୁହୂର୍ତ୍ତରେ ମଧ୍ୟ ତାଙ୍କ ହୃଦୟରେ ଅପୂର୍ବ ଆନନ୍ଦ ଭରିଦେଇଥିଲା । ୧୮୫୨ ମସିହା ଜାନୁୟାରୀ ମାସ ଛଅ ତାରିଖରେ ମହାମାନବ ଲୁଇସ ବ୍ରେଇଲେ ଶେଷନିଶ୍ୱାସ ତ୍ୟାଗ କଲେ । ଜୀବନର ଶେଷ ମୁହୂର୍ତ୍ତରେ ତାଙ୍କର ଭାଇ ଓ ବହୁ ବନ୍ଧୁ ମୃତ୍ୟୁଶଯ୍ୟା ନିକଟରେ ଉପସ୍ଥିତ ଥିଲେ ।

ବ୍ରେଇଲେଙ୍କର ମୃତ୍ୟୁରେ ଫ୍ରାନ୍ସ ତଥା ପୃଥିବୀ ଶୋକାଭିଭୂତ ହୋଇ-ପଡ଼ିଲା ।

ବ୍ରେଇଲେଙ୍କର ମୃତ୍ୟୁପରେ ତାଙ୍କ ଘରୁ କାଠପେଡ଼ିଟିଏ ବାହାରିଲା । ପେଡ଼ି ଉପରେ ଲେଖାଥିଲା "ମୁଁ ମଲାପରେ ଏ ପେଡ଼ିଟିକୁ ଖୋଲିବ ନାହିଁ । ନଷ୍ଟ-କରିଦେବ ।"

କିନ୍ତୁ ପେଡ଼ିଟିକୁ ଖୋଲି ଦେଖାଗଲା । ତା ଭିତରେ କେବଳ ଗୁଡାଏ କାଗଜ ଅଛି । ଜୀବନରେ ବ୍ରେଇଲେ ଯାହା ଦାନ କରିଥିଲେ ତାହା ସେହି କାଗଜରେ ଲେଖାଥିଲା ।

ଊନବିଂଶ ଶତାବ୍ଦୀର ଶେଷଭାଗ ସୁଦ୍ଧା ବ୍ରେଇଲେଙ୍କର ଅନ୍ଧ ବର୍ଣ୍ଣମାଳା ପୃଥିବୀରେ ବହୁଦେଶରେ ଆଦୃତ ହେଲା । ଫ୍ରାନ୍ସର ସରକାର, ସରକାରୀ ଅଫିସ ଗୁଡ଼ିକରେ ସେହି ବର୍ଣ୍ଣମାଳା ପ୍ରଚଳନ ପାଇଁ ଅନୁମତି ଦେଲେ ।



# ବିଶ୍ୱବିଚିତ୍ରା

## ଭାରତରେ ସର୍ବାଧିକ ଚିକିତ୍ସା ଦକ୍ଷବ୍ୟକ୍ତି

ଭାରତରେ ଚିକିତ୍ସା ବିଜ୍ଞାନର ବିଭିନ୍ନ ଦିଗରେ ତାଲିମ ପାଇଥିବା ଚିକିତ୍ସା ଦକ୍ଷ ବ୍ୟକ୍ତିମାନଙ୍କର ସଂଖ୍ୟା ପୃଥିବୀରେ ସର୍ବାଧିକ ।

ଭାରତରେ ବର୍ତ୍ତମାନ ୨,୬୮, ୭୧୨ ଜଣ ଏଲୋପାଥ, ୨, ୩୨, ୨୪୭ ଜଣ ଆୟୁର୍ବେଦ ଡାକ୍ତର, ୧,୦୯୪୯୩ ଜଣ ହୋମିଓପାଥ, ୨୨,୭୫୬ ଜଣ ୟୁନାନୀ ଓ ୧୮, ୧୯୦ ଜଣ ସିଦ୍ଧ ଚିକିତ୍ସକ ଅଛନ୍ତି ।

ଭାରତରେ ୮୬୪୮ ଜଣ ଦନ୍ତ ଚିକିତ୍ସକ, ୧,୬୨, ୮୭୫ ଜଣ ନର୍ସ, ୧,୫୬, ୮୭୦ ଜଣ ଧାତ୍ରୀ, ୮୦, ୦୧୨ ଜଣ ଅକ୍‌ଜିଲାରୀ ନର୍ସ ଓ ୧୦, ୯୧୨ ଜଣ ହେଲ୍‌ଥ ଭିଜିଟର ଅଛନ୍ତି ।

ଦେଶର ୧୦୬ଟି ମେଡ଼ିକାଲ କଲେଜ, ୨୮୬ଟି ନର୍ସ ତାଲିମ ସଂସ୍ଥାରେ ଆଧୁନିକ ଚିକିତ୍ସା ବିଜ୍ଞାନ ଶିକ୍ଷା ଦିଆଯାଏ ।

ନର୍ସିଙ୍ଗରେ ବି-ଏସ୍-ସି ଡିଗ୍ରୀ ପ୍ରଦାନ କରୁଥିବା ୨୧ଟି କଲେଜ ଭାରତରେ ଅଛି । ଆଉ ଚାରିଟି କଲେଜ ନର୍ସମାନଙ୍କୁ ପୋଷ୍ଟଗ୍ରାଜୁଏଟ ସ୍ତରରେ ଶିକ୍ଷା ଦିଅନ୍ତି । ପ୍ରତିବର୍ଷ ଭାରତରେ ଆଧୁନିକ ଚିକିତ୍ସା ବିଜ୍ଞାନରେ ୧୬୦୦୦ ଛାତ୍ରଛାତ୍ରୀଙ୍କୁ ଡିଗ୍ରୀ ପ୍ରଦାନ କରାଯାଏ । ୧୯-୭·୨୮ରେ ଏହି ସଂଖ୍ୟା ୧୪୧୪୬ରେ ଥିଲା ।

୧୯୫୦-୫୧ ମସିହାରେ ଏମ-ବି-ବି-ଏସ ଓ ନର୍ସିଙ୍ଗ ଡିପ୍ଲୋମା ଶିକ୍ଷାପାଇ ଯଥାକ୍ରମେ ୨,୬୭୫ ଓ ୧,୨୮୨ ଜଣ ଛାତ୍ରଛାତ୍ରୀ ଗ୍ରହଣ କରାଯାଇଥିଲା । ୧୯୮୨ ମସିହାରେ ଏହି ସଂଖ୍ୟା ଯଥାକ୍ରମେ ୧୧୦୫୪ ଓ ୭୬୬ରେ ପହଞ୍ଚିଲା । ୧୯୫୦ ମସିହାରେ ମିଡ଼ୱାଇଫମାନଙ୍କର ସଂଖ୍ୟାଥିଲା ୧୫୫୯, ୧୯୮୨ ମସିହାରେ ଏହିସଂଖ୍ୟା ୭୧୦୧କୁ ବୃଦ୍ଧି ପାଇଲା ।

## ଗାଭାସ୍କରଙ୍କର ବହି ରେକର୍ଡ ସୃଷ୍ଟିକଲା

ଭାରତର ବିଶ୍ୱବିଖ୍ୟାତ କ୍ରିକେଟ ଖେଳାଳି ସୁନୀଲ ଗାଭସ୍କର କ୍ରିକେଟ ଉପରେ ଖଣ୍ଡିଏ ବହି ଲେଖିଛନ୍ତି । ତିନିମାସ ମଧ୍ୟରେ ଏ ବହିର ୬୫,୦୦୦ କପି ବିକ୍ରୟହୋଇ ବିଶ୍ୱରେକର୍ଡ ସୃଷ୍ଟିକରିଛି । ଏହାପୂର୍ବରୁ ଜିଅଫ ବୈକଟଙ୍କର କ୍ରିକେଟ ଉପରେ ବହିର ୬୦୦୦୦ କପି ବିକ୍ରୟହୋଇ ରେକର୍ଡ ସୃଷ୍ଟିକରିଥିଲା ।

**ପାଞ୍ଚ ଶହ ବର୍ଷ ପ୍ରାଚୀନ ଅଣ୍ଡା**

ଚୀନର ପୁରତତ୍ତ୍ୱ ବେତ୍ତାଗଣ ଗୋଟିଏ ପଶ୍ପାର ୫୦୦ ବର୍ଷ ପ୍ରାଚୀନ ଅଣ୍ଡାଟିଏ ଭୂମିତଳୁ ଉଦ୍ଧାର କରିଛନ୍ତି ।

**ଈଶ୍ୱର ପ୍ରେମର ସାତଟି ସାଧନ**

୧—ଈଶ୍ୱରଙ୍କର ଗୁଣ, ପ୍ରେମ, ପ୍ରଭବ ଓ ରହସ୍ୟର ଅମୃତମୟୀ କଥାର ଶ୍ରବଣ, ମନନ ଓ ପଠନ ପାଠନ ।

୨—ଭଗବାନଙ୍କଠାରେ ଶ୍ରଦ୍ଧା ଓ ନିଷ୍କାମ ପ୍ରେମ କରୁଥିବା ବ୍ୟକ୍ତିଙ୍କର ସଙ୍ଗ ।

୩—ଭଗବାନଙ୍କର ସ୍ୱରୂପକୁ ମନେରଖି ପ୍ରେମ ପୂର୍ବକ ତାଙ୍କର ନାମର ଜପ ଓ କୀର୍ତ୍ତନ ।

୪—ଭଗବାନଙ୍କର ଆଜ୍ଞାର ପାଳନ ଓ ପ୍ରତ୍ୟେକ ସୁଖ ଦୁଃଖକୁ ଭଗବାନଙ୍କର ବିଧାନ ମନେକରି ପ୍ରସନ୍ନଚିତ୍ତ ରହିବା ।

୫—ସମ୍ପୂର୍ଣ୍ଣ ଜୀବଙ୍କୁ ଭଗବାନଙ୍କର ଅଂଶ ମନେକରି ସମସ୍ତଙ୍କର ହିତପାଇଁ ଚେଷ୍ଟାକରିବା ।

୬—ଈଶ୍ୱରଙ୍କର ତତ୍ତ୍ୱ ଜାଣିବା ଓ ତାଙ୍କର ଦର୍ଶନ ଲାଭପାଇଁ ଉତ୍କଣ୍ଠିତ ରହିବା ।

୭—ଏକାନ୍ତରେ କରୁଣ ସ୍ୱରରେ ଈଶ୍ୱର ପ୍ରାର୍ଥନା କରିବା ।

**ଶରତ ଋତୁ ଓ ଯମଜ ସନ୍ତାନ**

ଭରତର ଆନ୍ଥ୍ରୋପୋଲଜିକାଲ ସର୍ଭେର ବୈଜ୍ଞାନିକମାନେ ଅନୁସନ୍ଧାନରୁ ଜାଣିପାରିଛନ୍ତି ପଶ୍ଚିମବଙ୍ଗରେ ଶରତ ଋତୁରେ ଅଧିକ ଯମଜ ସନ୍ତାନ ଜନ୍ମଗ୍ରହଣ କରନ୍ତି । ଗୋଟିଏ ବର୍ଷରେ ସିଟି ହସପିଟାଲରେ ଜନ୍ମଗ୍ରହଣ କରିଥିବା ଯମଜଙ୍କ ମଧ୍ୟରୁ ୧୦୯ ଯମଜ ଶରତ ଋତୁରେ ଜନ୍ମଗ୍ରହଣ କରିଥିଲେ । ଗ୍ରୀଷ୍ମ ଓ ବସନ୍ତ ଋତୁରେ ଯମଜ ସନ୍ତାନ ଜନ୍ମହାର କମିଯାଏ ।

**ବ୍ରାଜିଲର ଆଦିବାସୀ**

ଦକ୍ଷିଣ ଆମେରିକାସ୍ଥିତ ବ୍ରାଜିଲର ଆଦିବାସୀମାନେ ପ୍ରାଗ୍ ଐତିହାସିକ ମାନବଭଳି ବାସକରନ୍ତି । ଏମାନେ ବର୍ଚ୍ଛା ସାହାଯ୍ୟରେ ମାଛ ଶିକାର କରିବାରେ ଦକ୍ଷ ।

## ଲାହୋରର ଭିକ୍ଷୁକ

ଲାହୋରର ପ୍ରତି ଭିକ୍ଷୁକ ଭିକ୍ଷାକରି ମାସକୁ ପ୍ରାୟ ୧୫୩୦ ଟଙ୍କା ଉପାର୍ଜନ କରନ୍ତି ।

## ଖାଦ୍ୟ ଓ କ୍ୟାଲୋରୀ

ଭାରତର ରାଜ୍ୟମାନଙ୍କ ମଧ୍ୟରେ ପଞ୍ଜାବର ଲୋକେ ଅଧିକ ପରିମାଣ କ୍ୟାଲୋରୀ ଗ୍ରହଣ କରିଥାଆନ୍ତି । ତାମିଲନାଡୁ, ଓଡ଼ିଶା ଓ ବିହାରର ଲୋକେ ସର୍ବାପେକ୍ଷା କମ କ୍ୟାଲୋରୀ ଗ୍ରହଣ କରିଥାଆନ୍ତି ।

## କ୍ରୂରତମ ମନ୍ତ୍ରୀ

ପୋୟେନ, ଚୀନ ସମ୍ରାଟ ଟୋହାନ ଟିମୁରଙ୍କର ମନ୍ତ୍ରୀ ଥିଲେ (୧୩୨୦—୧୩୭୦) । ଚୀନ ଅଧିବାସୀ ସରକାରଙ୍କ ବିରୁଦ୍ଧରେ ବିଦ୍ରୋହ କଲେ । ଯେଉଁମାନେ ପାରିବାରିକ ନାମ ଝଙ୍ଗ, ୱାଙ୍ଗ, ଲିଉ, ଲି ଏବଂ ଝଓ ନାମ ବହନ କରିଥିଲେ ସେମାନଙ୍କୁ ଆବାଳ-ବୃଦ୍ଧ-ବନିତା ନିର୍ବିଶେଷରେ ହତ୍ୟା କରିବାପାଇଁ ପୋୟେନ ଆଦେଶ ଦେଇ-ଥିଲେ । ଚତୁର୍ଦ୍ଦଶ ଶତାବ୍ଦୀରେ ଚୀନର ୫୬ ନିୟୁତ ଲୋକଙ୍କ ମଧ୍ୟରୁ ୫୦ ନିୟୁତ ଏହି ନାମ ବହନ କରିଥିଲେ । ସୌଭାଗ୍ୟବଶତଃ ମିଙ୍ଗମାନଙ୍କ ଦ୍ୱାରା ଟୋହାନ ଟିମୁର ଓ ପୋ-ୟେନ ଗାଦିଚ୍ୟୁତ ହେବାଫଳରେ ଏହି ଗଣହତ୍ୟା ବନ୍ଦ କରାଯାଇଥିଲା ।

## ପାର୍ଲିଆମେଣ୍ଟ ଖର୍ଚ୍ଚ

ଭାରତର ରାଷ୍ଟ୍ରପତି ଓ ଉପରାଷ୍ଟ୍ରପତିଙ୍କ ପାଇଁ ଭାରତ ସରକାର ଦୈନିକ ୨୨, ୪୬୫ ଟଙ୍କା ଓ ବାର୍ଷିକ ୮୨ ଲକ୍ଷ ଟଙ୍କା ଖର୍ଚ୍ଚ କରନ୍ତି । ପ୍ରଧାନମନ୍ତ୍ରୀ ଓ ତାଙ୍କର ସହଯୋଗୀମାନଙ୍କ ପାଇଁ ସରକାରଙ୍କୁ ବାର୍ଷିକ ୪୨୧ ଲକ୍ଷ ଖର୍ଚ୍ଚ କରିବାକୁ ପଡ଼େ । ଏହାବ୍ୟତୀତ ପାର୍ଲିୟାମେଣ୍ଟ ପାଇଁ ସରକାରଙ୍କୁ ବାର୍ଷିକ ୭୬୫ ଲକ୍ଷ ଟଙ୍କା ଖର୍ଚ୍ଚ କରିବାକୁ ପଡ଼େ ।

## ହଠାତ ଦୃଷ୍ଟିଲାଭ

ଓଟାୱାର (କାନାଡା) ବବ ଆଟେଭ୍ର ପ୍ରାୟ ଆଠବର୍ଷ ହେଲା ଅନ୍ଧହୋଇ ଯାଇଥିଲେ । ଏବେ ହଠାତ ସେ ନିଜର କୁକୁର ଉପରେ ଝୁଣ୍ଟି ପଡ଼ିଗଲେ । ତାଙ୍କର ମୁଣ୍ଡ ଚଟାଣ ଉପରେ ପିଟିହୋଇଗଲା । ପର ମୁହୂର୍ତ୍ତରେ ତାଙ୍କର ଦୃଷ୍ଟିଶକ୍ତି ଫେରି ଆସିଲା ।

### ଚେସ ଖେଳରେ ବିଶ୍ୱ ରେକର୍ଡ

ନଟିଂହାମ୍ ବିଶ୍ୱବିଦ୍ୟାଳୟର ଛାତ୍ର ଫିଲିପ୍ ଥମାସ ଓ ଆଣ୍ଡ୍ରୁ ହାରିସ ନିରବିଚ୍ଛିନ୍ନ ଭାବରେ ଚେସ୍‌ଖେଳି ବିଶ୍ୱରେକର୍ଡ ସୃଷ୍ଟି କରିଛନ୍ତି । ଏମାନଙ୍କ ପୂର୍ବରୁ ଦୁଇଜଣ ଆମେରିକାନ ନିରବିଚ୍ଛିନ୍ନ ଭାବରେ ୧୫୮ ଘଣ୍ଟା ୨୪ ମିନିଟ ଚେସ୍‌ଖେଳି ବିଶ୍ୱରେକର୍ଡ ସୃଷ୍ଟି କରିଥିଲେ । ଫିଲିପ୍ ଥମାସ ଓ ଆଣ୍ଡ୍ରୁ ହାରିସ ଏକଶହ ଗେମ୍‌ରୁ ଅଧିକ ଖେଳିଥିଲେ ।

### ଓ୍ୟାସିଂଟନଙ୍କ ପାଇଁ ଶୁକ୍ରବାର

ଜର୍ଜ ୱାସିଙ୍ଗଟନ ଶୁକ୍ରବାର ଜନ୍ମଗ୍ରହଣ କରିଥିଲେ । ଶୁକ୍ରବାର ଦିନ ସେନାର ପ୍ରଧାନ ସେନାପତିରୂପେ ନିର୍ବାଚିତ ହେଲେ । ସେ ୟର୍କ ଟାଉନର ବିଜୟ ଶୁକ୍ରବାର ଦିନ ହାସଲ କରିଥିଲେ ଓ ଶୁକ୍ରବାର ଦିନ ରାଷ୍ଟ୍ରପତିରୂପେ ନିର୍ବାଚିତ ହେଲେ । ଶୁକ୍ରବାର ଦିନ ସେ ପ୍ରଥମ କ୍ୟାବିନେଟ ମନ୍ତ୍ରୀ ଆଲେକଜାଣ୍ଡର ହାମିଲଟନଙ୍କୁ ନିଯୁକ୍ତ କରିଥିଲେ ଓ ଶୁକ୍ରବାର ଦିନ ହ୍ୱାଇଟ ହାଉସର କୋଣ ପ୍ରସ୍ତର ସ୍ଥାପନ କରିଥିଲେ । ଶୁକ୍ରବାର ଦିନ ତାଙ୍କର ରାଷ୍ଟ୍ରପତି କାର୍ଯ୍ୟକାଳ ଶେଷ ହୋଇଯାଇଥିଲା ।

### ଅନ୍ଧ ହେଲେ ବି ଜ୍ଞାନୀ

ହେଲେନ କେଲର (୧୮୮୦-୧୯୬୮) ଅନ୍ଧ ଏବଂ ବଧିର । ଦୁଇବର୍ଷ ବୟସରୁ ସେ ଅନ୍ଧ ଓ ବଧିର ହୋଇଗଲେ ; କିନ୍ତୁ ସେ ଜଣେ ଦକ୍ଷ ଅଧ୍ୟାପକ ଥିଲେ । ହେଲେନ କିଲର ଦଶଖଣ୍ଡ ଉଚ୍ଚକୋଟୀର ଗ୍ରନ୍ଥ ଲେଖିଯାଇଛନ୍ତି ।

### ଅସାଧାରଣ ମାନବ

କାଉଣ୍ଟ ଦେଶମଣ୍ଡ ଜଣେ ଅସାଧାରଣ ବ୍ୟକ୍ତି ଥିଲେ । ତାଙ୍କର ଦୁଃସାହସିକ କାର୍ଯ୍ୟ ନିମନ୍ତେ ସେ ସର୍ବଜନ ପରିଚିତ । ୧୯୭୮ ମସିହା ମାର୍ଚ୍ଚ ମାସରେ ସେ ୨୩-୨୬ ଇଞ୍ଚ ଲମ୍ବର ଆଠଟି ତରବାରି ଗିଳି ଦେଇଥିଲେ । ଏହା ଅମେରିକାର ଏକ ଟେଲିଭିଜନ ସୋ'ରେ ପ୍ରଦର୍ଶିତ ହୋଇଥିଲା ।

### ଭାରତୀୟ ରେଳପଥ

ଭାରତୀୟ ରେଳପଥ ଏସିୟାରେ ସର୍ବପ୍ରାଚୀନ ଓ ସର୍ବବୃହତ । ଏହା ପୃଥିବୀର ଚତୁର୍ଥ ବୃହତ ରେଳପଥ । ପ୍ରତିଦିନ ଏହାରେ କୋଟି କୋଟି ଯାତ୍ରୀ ଯିବା ଆସିବା କରିଥାଆନ୍ତି ଓ ୬.୫ ନିୟୁତ ଟନ ମାଲ ପରିବହନ ହୋଇଥାଏ । ଆମ ଦେଶରେ ପ୍ରତିଦିନ ୧୧୦୦୦ ରେଳଗାଡ଼ି ଚଳାଚଳ କରେ ଓ ଏହା ୭୦୭୦ଟି ଷ୍ଟେସନରୁ ଯାତ୍ରୀ

ନେବା ଆଣିବା କରେ । ରେଳପଥରେ ୫୮୯୬ କୋଟି ଟଙ୍କା ଖଟାଯାଇଛି । ରେଳ ବିଭାଗ କର୍ମଚାରୀଙ୍କର ସଂଖ୍ୟା ୧.୬ ନିୟୁତ । ଭାରତରେ ଅନ୍ୟ କୌଣସି ସରକାରୀ ବା ବେସରକାରୀ ଅନୁଷ୍ଠାନରେ ଏତେ କର୍ମଚାରୀ କାମ କରନ୍ତି ନାହିଁ ।

### ବିଶ୍ୱର ବୃହତ୍ତମ ବିଶ୍ୱବିଦ୍ୟାଳୟ

ନ୍ୟୁୟର୍କର ଷ୍ଟେଟ ୟୁନିଭରସିଟି ପୃଥିବୀର ବୃହତ୍ତମ ବିଶ୍ୱବିଦ୍ୟାଳୟ । ଏ ବିଶ୍ୱ-ବିଦ୍ୟାଳୟର ଛାତ୍ର ସଂଖ୍ୟା-୩,୫୦,୦୦୦ । ନ୍ୟୁୟର୍କର ସିଟି ୟୁନିଭରସିଟି ଏ କ୍ଷେତ୍ରରେ ଦ୍ୱିତୀୟ ଓ ପ୍ୟାରିସ ୟୁନିଭରସିଟି ତୃତୀୟ ସ୍ଥାନ ଅଧିକାର କରିଛି । ଏ ଦୁଇଟି ୟୁନିଭରସିଟିର ଛାତ୍ର ସଂଖ୍ୟା ଯଥାକ୍ରମେ ୨,୫୧,୦୦୦ ଓ ୨,୩୮,୦୦୦

### ଅଗ୍ନେୟଗିରିର ବିସ୍ଫୋରଣ

୧୮୮୩ ଖ୍ରୀଷ୍ଟାବ୍ଦରେ ଜାଭା ନିକଟରେ ଏକ ଅଗ୍ନେୟଗିରିରୁ ବିସ୍ଫୋରଣ ଘଟିଲା । ଏହି ବିସ୍ଫୋରଣ ଶବ୍ଦ ପ୍ରାୟ ୩,୦୦୦ ମାଇଲ ଦୂରକୁ ଶୁଣାଯାଇଥିଲା ଓ ଏ ବିସ୍ଫୋରଣ ଦ୍ୱାରା ୩୬,୦୦୦ ବ୍ୟକ୍ତି ନିହତ ହୋଇଥିଲେ ।

### ପୃଥିବୀର ସର୍ବବୃହତ ବୋମାବର୍ଷୀ ବିମାନ

ଫ୍ରାନ୍‌ସର ଡାସଲ୍‌ଟ ମିରେଜ—୪, ପୃଥିବୀର ଦ୍ରୁତତମ ବୋମାବର୍ଷୀ ବିମାନ ମାନଙ୍କ ମଧ୍ୟରେ ଅନ୍ୟତମ । ଏହା ପ୍ରତି ଘଣ୍ଟାରେ ୧୪୫୦ ମାଇଲ ବେଗରେ ୩୬୦୦୦ ଫୁଟ ଉପରେ ଉଡ଼ଯାଇ ପାରିବ । ପୃଥିବୀର ସର୍ବବୃହତ ବୋମାବର୍ଷୀ ବିମାନ ହେଲା—୮—ଜେଟ ଷ୍ଟେଷ୍ଣ ଉଇଙ୍ଗ ବୋଇଙ୍ଗ ବି-୫୨ ଏଚ୍ ଷ୍ଟ୍ରାଟୋ ଫୋର୍ଟରେସ । ଏହା ୪୮୮-୦୦୦ ପାଉଣ୍ଡ ଭାର ବହନ କରିପାରିବ ।

### ସର୍ବାଧିକ ପକ୍ଷ

ଟୁଇପଲିଙ୍ଗ ହଂସର ୨୫,୨୧୬ଟି ପକ୍ଷ ଅଛି । ପୃଥିବୀରେ ବାସ କରୁଥିବା ପକ୍ଷୀ ମାନଙ୍କ ମଧ୍ୟରେ ଏତେ ସଂଖ୍ୟକ ପର ଅନ୍ୟ କାହାରି ନାହିଁ ।

### ହୀରାର ସର୍ବୋଚ୍ଚ ମୂଲ୍ୟ

ଫିଲ୍ମ ଅଭିନେତା ରିଚାର୍ଡ ବର୍ଟନ ସୁନ୍ଦରୀ ଫିଲ୍ମ ଅଭିନେତ୍ରୀ ଏଲିଜାବେଥ ଟେଲରଙ୍କୁ ୧୯୬୪ ଓ ୧୯୬୯ ମସିହାରେ ବିବାହ କରିଥିଲେ । ସେ ତାଙ୍କୁ ଗୋଟିଏ ୬୯.୨୪ କାରେଟର ଖାଣ୍ଟି ହୀରା ଉପହାର ଦେଇଥିଲେ । ଏହାର ମୂଲ୍ୟ ୧,୦୫୦,୦୦୦ ପାଉଣ୍ଡ । ପୃଥିବୀରେ ଏତେ ମୂଲ୍ୟରେ ଆଉ କୌଣସି ହୀରା ବିକ୍ରୟ କରଯାଇ ନାହିଁ ।

**ପ୍ରତି ମିନିଟ୍‌ରେ ଜନ୍ମ ସଂଖ୍ୟା**

ଆମେରିକାର ପରିବେଶ ବିଜ୍ଞାନୀମାନଙ୍କର ହିସାବ ଅନୁସାର ପୃଥିବୀରେ ପ୍ରତି ମିନିଟ୍‌ରେ ୧୬୨, ପ୍ରତିଦିନ ୨୫୦,୦୦୦ ଓ ପ୍ରତିବର୍ଷ ୯୦ ନିୟୁତ ଶିଶୁ ଜନ୍ମଗ୍ରହଣ କରୁଛନ୍ତି । ବର୍ତ୍ତମାନ ପୃଥିବୀର ଜନସଂଖ୍ୟା ୪୫୦୦ ନିୟୁତରୁ ଅଧିକ ।

**ଭାରତ ମହାସାଗରରେ ଆମେରିକାର ନୌ ଓ ବିମାନ ଘାଟୀ**

ଭାରତ ମହାସାଗର ମଧ୍ୟରେ ଥିବା ଡ଼ିଆଗୋ ଗାର୍ସିୟା ଦ୍ୱୀପରେ ଆମେରିକା ଗୋଟିଏ ନୌ ଘାଟୀ ଓ ଗୋଟିଏ ବିମାନ ଘାଟୀ ପ୍ରତିଷ୍ଠା କରିଛି । ଆମେରିକାର ନୌ ବାହିନୀର ଇଂଜିନିୟର କର୍ପସଙ୍କ ନାମ 'ସି ବିଜ' । ଏମାନେ ନିର୍ମାଣ କରିଥିବା ବିମାନ ଘାଟୀର ଲମ୍ବ ୩୬୦୦ ମିଟାର ।

**ବିଲାତି ଆଳୁ ଓ ମଣିଷ**

ଆୟର୍ଲଣ୍ଡର ପ୍ରତ୍ୟେକ ବ୍ୟକ୍ତି ଦିନକୁ ପ୍ରାୟ ୫୦୦ ଗ୍ରାମ ବିଲାତି ଆଳୁ ଖାଆନ୍ତି । ଏତେ ଅଧିକ ବିଲାତି ଆଳୁ ପୃଥିବୀର ଅନ୍ୟ କୌଣସି ଦେଶର ଲୋକେ ଖାଆନ୍ତି ନାହିଁ ।

**ଅପୁଷ୍ଟି ଜନିତ ରୋଗ**

ଖାଦ୍ୟ ଅଭାବରୁ ପୃଥିବୀରେ ପ୍ରତିଦିନ ପ୍ରାୟ ଦଶ ହଜାର ଲୋକ ଅନାହାରରେ ମରନ୍ତି , କିନ୍ତୁ ଅପୁଷ୍ଟି ହେତୁ ପ୍ରତିଦିନ ପ୍ରାୟ ୫୦,୦୦୦ ଲୋକ ମରନ୍ତି ।

**କଲେରା ଟିକା**

ସ୍ୱଇଡେନର ବୈଜ୍ଞାନିକମାନେ ଏକ ନୂତନ ପ୍ରକାର କଲେରା ଟିକା ପଶୁ ଉପରେ ପରୀକ୍ଷା ନିରୀକ୍ଷା କରି ସାଫଲ୍ୟ ଅର୍ଜନ କରିଛନ୍ତି । ଏ ଟିକା ପୂର୍ବ ଟିକା ଅପେକ୍ଷା ଅଧିକ ଦୀର୍ଘସ୍ଥାୟୀ ।

**ସର୍ବବୃହତ ବିଲାତି ଆଳୁ**

ଆମେରିକାର ଜେ-ବି-ସ୍ୱାନ ନାମକ ଜଣେ ବ୍ୟକ୍ତି ବିଲାତି ଆଳୁ ଚାଷ କରି ଗୋଟିଏ ୯୬ ପାଉଣ୍ଡ ୧୦ ଆଉନ୍‌ସର ବିଲାତି ଆଳୁ ଉତ୍ପାଦନ କରିଥିଲେ । ଏହି ବିଲାତି ଆଳୁର ଲମ୍ବ ୨ ଫୁଟ ୫ ଇଞ୍ଚ ।

**ପଞ୍ଜୁରିରେ ବନ୍ଧା**

ମାତ୍ର ୧୭ ଇଞ୍ଚ ଉଚ୍ଚ ଅଲିପସ ନାମକ ଜଣେ ବାମନକୁ ଅପରାଧ ନିମନ୍ତେ, ପ୍ରାଚୀନ ଇଜିପ୍ଟର ଆଲେକଜାଣ୍ଡ୍ରିୟାରେ ଗୋଟିଏ ପଞ୍ଜୁରିରେ ବନ୍ଦ କରି ରଖାଯାଇଥିଲା ।

**୨୦୦୦ ଖ୍ରୀଷ୍ଟାବ୍ଦ**

୨୦୦୦ ଖ୍ରୀଷ୍ଟାବ୍ଦରେ ପୃଥିବୀରେ ପ୍ରତି ଏକ ଶହ ଜଣଙ୍କ ମଧ୍ୟରୁ ୫୮ ଜଣ ଏସିୟ ୧୩ ଜଣ ଆଫ୍ରିକୀୟ, ୧୦ ଜଣ ଲାଟିନ ଆମେରିକୀୟ, ୯ ଜଣ ୟୁରୋପୀୟ, ୫ ଜଣ ରୁଷୀୟ ଓ ୫ ଜଣ ଉତ୍ତର ଆମେରିକୀୟ ଥିବେ ।

**କେଶ ନିର୍ମିତ ଝାଡୁ**

ଶ୍ରୀଲଙ୍କାସ୍ଥିତ କାଣ୍ଡିର ପବିତ୍ର ମନ୍ଦିର ଚୂଥରେ ଯେଉଁ ଝାଡୁ ବ୍ୟବହୃତ ହେଉଛି ତାହା ବର୍ମାର ରଜା ବ·ୟିନାୟୁଙ୍କ ଓ ତାଙ୍କର ରାଣୀଙ୍କର କେଶରେ ନିର୍ମିତ ।

**ବାନରକୁ କାରାଦଣ୍ଡ**

କଲମ୍ବିୟାର ବାଗୋଟାରେ ଗୋଟିଏ ବାନର ତାର ଖାମିନ୍ଦକୁ କାମୁଡ଼ ଥିବାରୁ, ନ୍ୟାୟାଳୟ ବାନରଟିକୁ ଛଅ ମାସ କାରାଦଣ୍ଡରେ ଦଣ୍ଡିତ କରିଛନ୍ତି । ମାଙ୍କଡ଼ଟିକୁ ସ୍ଥାନୀୟ ମାଜିଷ୍ଟ୍ରେଟଙ୍କ ସମ୍ମୁଖରେ ଉପସ୍ଥିତ କରାଗଲା । ମାଙ୍କଡଟି ପ୍ରଥମ ଥର କାମୁଡ଼ିଥିବାରୁ ତାକୁ ପ୍ରାଣଦଣ୍ଡ ଦିଆଗଲା ନାହିଁ ।

**ପକ୍ଷୀ ନିବାସ**

ଆଫ୍ରିକା ମହାଦେଶର ସୁଡାନସ୍ଥିତ ଡୋରଓର ଅଧିବାସୀମାନେ ନିଜ ଘରର ସମ୍ମୁଖ କାନ୍ଥରେ ପକ୍ଷୀମାନଙ୍କର ନିବାସ ନିମନ୍ତେ ଗର୍ତ୍ତ ନିର୍ମାଣ କରନ୍ତି । ପକ୍ଷୀ ବାସ କରୁ ନଥିବା ଯେ କୌଣସି ଘରକୁ ସେମାନେ ନିରାପଦ ମନେ କରନ୍ତି ନାହିଁ ।

**ସର୍ବପ୍ରଥମ ପଶୁଶାଳା**

୧୭୫୨ ଖ୍ରୀଷ୍ଟାବ୍ଦରେ ରୋମର ସମ୍ରାଟ ପ୍ରଥମ ଫ୍ରାନ୍‌ସିସ ତାଙ୍କର ରାଣୀ ମେରୀୟା ଥେରେସାଙ୍କ ପାଇଁ ଭିଏନାରେ ପଶୁଶାଳାଟିଏ ନିର୍ମାଣ କରାଇଥିଲେ ।

**ନିମ୍ନତମ ଆନ୍ତର୍ଜାତୀୟ ବିମାନ ବନ୍ଦର**

ନେଦରଲ୍ୟାଣ୍ଡସ୍ଥିତ ଆମଷ୍ଟରଡାମର ସିଫୋଲ ବିମାନ ବନ୍ଦର ପୃଥିବୀର ନିମ୍ନତମ ବିମାନ ବନ୍ଦର । ଏହା ସମୁଦ୍ର ପତନର ୧୩ ଫୁଟ ତଳେ ଅବସ୍ଥିତ ।

**ଗୁଳିରେ ମୃତ୍ୟୁ ହେଲା ନାହିଁ**

୧୮୯୮ ଖ୍ରୀଷ୍ଟାବ୍ଦରେ ଓମଡର ମ୍ୟାନ ଯୁଦ୍ଧରେ ଜେନେରାଲ ସାର ଆର୍ଥର ସଗୋଟଙ୍କ ଶରୀରରେ ଗୋଟିଏ ଗୁଳି ଲାଗି ତାଙ୍କର ହୃଦପଣ୍ଡ ଭେଦ କଲା ; କିନ୍ତୁ ଏହା ପରେ ସେ ୩୧ ବର୍ଷ ବଞ୍ଚି ରହିବା ଦେଖି ଡାକ୍ତରମାନେ ଆଶ୍ଚର୍ଯ୍ୟ ହେଲେ । ୭୬ ବର୍ଷ ବୟସରେ ତାଙ୍କର ମୃତ୍ୟୁ ହେଲା ।

**ପିମ୍ପୁ ଭିକ୍ଷୀ ପଦ୍ମଫୁଲ**

ଗାଏନାର କାରିବିୟାନ ସାଗରରେ ପିମ୍ପୁଡ଼ିଭକ୍ଷୀ ପଦ୍ମ ଫୁଲ ଫୁଟେ । ଏ ଫୁଲର ମଧୁର ଗନ୍ଧରେ କୀଟ ପତଙ୍ଗ ଆକୃଷ୍ଟ ହୋଇ ତା ଭିତରେ ପ୍ରବେଶ କଲାମାତ୍ରେ ଫୁଲର ପାଖୁଡାଗୁଡ଼ିକ ବନ୍ଦ ହୋଇଯାଏ ଓ ତା ଭିତରେ ପ୍ରବେଶ କରିଥିବା କୀଟ ପତଙ୍ଗ ମରିଯାଆନ୍ତି ।

**ବିଷ ପିଇ ପାରିବି**

ହୋଲିନେସ ଚର୍ଚ୍ଚ ଅଫ୍ ଗାଡ଼ଇନର ସଦସ୍ୟଙ୍କୁ ଈଶ୍ୱରଙ୍କ ଉପରେ ବଡ ଗଭୀର ଆସ୍ଥା ରହିଛି । ସେମାନଙ୍କର ବିଶ୍ୱାସ କୌଣସି ଭୌତିକ ଆଘାତ ଦ୍ୱାରା ସେମାନଙ୍କର କୌଣସି କ୍ଷତିହେବ ନାହିଁ । କିଛିଦିନ ପୂର୍ବରୁ ଦୁଇଜଣ ସଦସ୍ୟ ନିଜ ଆସ୍ଥାର ନମୁନା ପେଶ କରିବାପାଇଁ ଷ୍ଟ୍ରିଚିନାଇନ ନାମକ ତୀବ୍ର ବିଷପାନ କଲେ ଓ ସେମାନଙ୍କର ମୃତ୍ୟୁ ହୋଇଗଲା । ଗୀର୍ଜାର ଏ ସଦସ୍ୟମାନେ ପୂଜା ଓ ପ୍ରାର୍ଥନା ସମୟରେ ବିଷାକ୍ତ ସାପ ନିଜ ସାଙ୍ଗରେ ରଖୁଥିଲେ ।

ଗତ କେତେଦିନ ତଳେ ଆମେରିକାର ଟେନେସୀ ରାଜ୍ୟ ଗୀର୍ଜାର ସଦସ୍ୟ-ମାନଙ୍କର ବିଷ ପିଇବା ଓ ସାପ ରଖିବା ରୋକିବା ପାଇଁ ଏକ ମୋକଦ୍ଦମା ଆଞ୍ଚଳିକ ନ୍ୟାୟାଧୀଶ ଜର୍ଜ ସେଫାର୍ଡଙ୍କର ଅଦାଲତରେ ଦାୟର କଲେ । ନ୍ୟାୟାଧୀଶ ସାପ ରଖିବା ବେଆଇନ ଘୋଷଣା କଲେ କିନ୍ତୁ ବିଷପାନ ସମ୍ବନ୍ଧରେ କହିଲେ ସଦସ୍ୟ ଇଚ୍ଛା କଲେ ବିଷପାନ କରି ପାରନ୍ତି । ଫୈସଲାରେ କୁହାଯାଇଛି, ବିଷାକ୍ତ ସାପ କାରଣରୁ ଧାର୍ମିକକ୍ରିୟା ସମୟରେ ଶାନ୍ତି ଓ ବ୍ୟବସ୍ଥା ଭଙ୍ଗ ହେଉଛି ଓ ଗୀର୍ଜାର ସମ୍ମାନ ହ୍ରାସ ପାଉଛି; କିନ୍ତୁ କୌଣସି ସଦସ୍ୟ ବିଷପାନ କରିବାଦ୍ୱାରା ଅନ୍ୟ ସଦସ୍ୟ ବିଷପାନ କରିବାକୁ କେବେହେଲେ ଉତ୍ସାହିତ ହେବେନାହିଁ ।

**ରଜାବାବୁଙ୍କ ରୋଗ**

ମଧ୍ୟ ପ୍ରଦେଶରେ ଛତୀଶଗଡ ଅଞ୍ଚଳରେ ଗୋଟିଏ ବଡ଼ ନଗର ବିଳାସପୁର । ସେଠାରେ ଏକ ଜମିଦାରୀ ଅଛି । ସେ ଜମିଦାରଙ୍କୁ ଲୋକେ ରଜାବାବୁ ନାମରେ

ଡାକନ୍ତି । ତାଙ୍କୁ ଏକ ଅଦ୍ଭୁତ ରୋଗ ହେଲା । ସବୁ ସମୟରେ ତାଙ୍କର ମନେହେଲା କେହି ତାଙ୍କର ଗଳା ଚିପିଦେଉଛି । କାନରେ ସାଏଁ ସାଏଁ ଶବ୍ଦ ହେଲା । ରଜା ବାବୁ ନିଜ ପରିବାରର ଡାକ୍ତରଙ୍କୁ ଡକାଇଲେ ଡାକ୍ତର ରୋଗ ଚିହ୍ନିପାରିଲେ ନାହିଁ, ତଥାପି କିଛିଦିନ ସେ ଚିକିତ୍ସା କଲେ । ଲାଭ ନ ହେବାରୁ ଡାକ୍ତର ତାଙ୍କୁ ବିଶେଷଜ୍ଞଙ୍କ ପାଖକୁ ପଠାଇଲେ । ବିଶେଷଜ୍ଞ ମଧ୍ୟ ରୋଗ ଚିହ୍ନିପାରିଲେ ନାହିଁ । ସେ କହିଲେ, ପାଞ୍ଚ ଛଅମାସ ଭିତରେ ରଜା ବାବୁଙ୍କର ମୃତ୍ୟୁ ହେବ ।

ରଜା ବାବୁ ଦେଖିଲେ ତାଙ୍କର ଦିନ ଶେଷ ହୋଇଆସୁଛି । ଏଣୁ ସିରକଲେ ଅବଶିଷ୍ଟ ଜୀବନ ଖୁବ୍ ଭଲ ଖାଇ ଓ ଦାମିକା ପୋଷାକ ପିନ୍ଧି କଟାଇ ଦେବେ । ସେ ବଜାରକୁ ଯାଇ ନୂଆ ଫେସନର ବହୁତ କନାଥାନ କିଣିଆଣିଲେ ଓ ଦର୍ଜି ପାଖରେ ପହଞ୍ଚିଲେ । ଦର୍ଜି ମାପ ନେବା ସମୟରେ ତାଙ୍କୁ ପଚାରିଲେ କେଜ କେତେ ? ଷୋଳ ଇଞ୍ଚ ? ରଜା ବାବୁ କହିଲେ —"ନା ନା ପନ୍ଦର । ମୁଁ ସବୁବେଳେ ପନ୍ଦର ଇଞ୍ଚ ତିଆରି କରୁଛି ।" ଏହା ଶୁଣି ଦର୍ଜି କହିଲେ—"ଆପଣଙ୍କର ଇଚ୍ଛା । ଯେପରି କହିବେ ତିଆରି କରିଦେବି । କିନ୍ତୁ ଗଳା ଚିପିହୋଇଗଲାପରି ମନେହେବ ଓ କାନ ସାଁ ସାଁ କରିବ ।"

ଏଥର ରଜା ବାବୁ ନିଜ ରୋଗର କାରଣ ବୁଝିପାରିଲେ । କେବଳ ମାପ ୧୬ ଇଞ୍ଚ କରି ପୋଷାକ ପିନ୍ଧିବାପରେ ତାଙ୍କର ରୋଗ ଭଲ ହୋଇ-ଗଲା ।

**ଅଲଟ୍ରାସୋନିକ ଶବ୍ଦ**

ଇଟାଲୀର ଏକ ଫାର୍ମ ଏକପ୍ରକାର ବୈଦ୍ୟୁତିକ ଯନ୍ତ୍ର ଆବିଷ୍କାର କରିଛନ୍ତି । ଏହି ଯନ୍ତ୍ର ଦିନ ରାତି ଚବିଶ ଘଣ୍ଟା ଏକପ୍ରକାର ଅଲଟ୍ରାସୋନିକ ଶବ୍ଦ ସୃଷ୍ଟି କରିବ । ଏହି ଶବ୍ଦଦ୍ୱାର ଘରେ ଥିବା ମୂଷାମାନେ ଭୟକରି ପଳାଇ ଯିବେ । ଏହି ଶବ୍ଦ ମଣିଷ କିମ୍ବା ଅନ୍ୟ କୌଣସି ପ୍ରାଣୀଙ୍କ ଉପରେ ପ୍ରଭାବ ପକାଇବ ନାହିଁ ।

**ବୃହତ୍ତମ ନୀଳ ହୀରା**

ଆମେରିକାର ରାଜଧାନୀ ୱାସିଂଟନ ଠାରେ ସ୍ମିଥୋନିୟାନ ଇନଷ୍ଟିଚ୍ୟୁସନରେ ରଖାଯାଇଥିବା 'ହୋପ ହୀରା' ପୃଥିବୀର ବୃହତ୍ତମ ନୀଳହୀରା । ଏହାର ଓଜନ ୪୫.୫ କ୍ୟାରେଟ ।

**କମ୍ପ୍ୟୁଟର ଓ କଥା**

ରୁଷର ଲେନିନଗ୍ରାଡରେ ବୈଜ୍ଞାନିକମାନେ ଏକପ୍ରକାର କୃତ୍ରିମ କାନ ନିର୍ମାଣ

କରିଛନ୍ତି । ଏହି ଜ୍ଞାନ ଶବ୍ଦକୁ ବୈଦ୍ୟୁତିକ ସଂକେତରେ ପରିବର୍ତ୍ତିତ କରିବ ଓ ଏହି ସଂକେତକୁ ସ୍ୱତନ୍ତ୍ର କୋର୍ଡ ଦ୍ୱାରା ଲିପିବଦ୍ଧ କରିବ । ଏକ ତାଲିମପ୍ରାପ୍ତ କମ୍ପ୍ୟୁଟର ବିନା ଓ୍ୱକ୍ସିନାରୀ ସାହାଯ୍ୟରେ ଏ ସମସ୍ତ ସଂକେତ ଏ କୋର୍ଡ ଭାଷା ବୁଝିପାରିବ । ସୋଭିଏତ ବୈଜ୍ଞାନିକମାନେ ଏକପ୍ରକାର କମ୍ପ୍ୟୁଟର ନିର୍ମାଣ କରୁଛନ୍ତି ଏବଂ କମ୍ପ୍ୟୁଟର ମଣିଷ ସହିତ କଥାବାର୍ତ୍ତା କରିବ ।

## ପୃଥିବୀରେ ଚୁନ'ର ପରିମାଣ

ପୃଥିବୀରେ ଥିବା ସମସ୍ତ ଚୁନାକୁ ଗୋଟିଏ ଘନାକୃତି ସ୍ତୁପ ରୂପେ ରଖାଗଲେ ତାହାର ଉଚ୍ଚତା ୧୬ ମିଟର ହେବ ।

## ଘାସରୁ ପ୍ରୋଟିନ

ଅଷ୍ଟ୍ରେଲିୟାର ବୈଜ୍ଞାନିକମାନେ ଏବେ ଘାସରୁ ପ୍ରୋଟିନ୍ ବାହାର କରି ପାରୁଛନ୍ତି । ଏହା ଗାଈ କ୍ଷୀରରୁ ବାହାରୁଥିବା ପ୍ରୋଟିନ ଅପେକ୍ଷା ୧୬ ଗୁଣ ଅଧିକ ପୁଷ୍ଟିକର ।

## ସର୍ବାପେକ୍ଷା ଶସ୍ତା ସହର

ଶ୍ରୀଲଙ୍କାର ରାଜଧାନୀ କଲମ୍ବୋ ପୃଥିବୀର ସର୍ବାପେକ୍ଷା ଶସ୍ତା ସହର । ଜାତିସଙ୍ଘ ହିସାବ ଅନୁସାରେ ଯେଉଁ ଜିନିଷର ମୂଲ୍ୟ ନିୟୁର୍କରେ ୧୦୦୦ ଡଲାର ଏବଂ ଟୋକିଓରେ ୧୯୯ ଡଲାର, ସେହି ଜିନିଷର ମୂଲ୍ୟ କଲମ୍ବୋରେ ୫୮ ଡଲାର । ଢାକା, କାଠମାଣ୍ଡୁ, ଇସଲାମାବାଦ, କାଏରେ, ରେଙ୍ଗୁନ୍ ଓ ନାଇରୋବି ଅପେକ୍ଷା କଲମ୍ବୋର ଜିନିଷ ଶସ୍ତା ।

## ସର୍ବୋତ୍କୃଷ୍ଟ କଥା କହୁଥିବା ପକ୍ଷୀ ।

ଆଫ୍ରିକାରେ 'ପୁତଳ' ନାମକ ଏକପ୍ରକାର ଧୂସର ରଙ୍ଗର ପୁରୁଷ ଶୁଆ ରହିଛି । ସେ ୧୦୦୦ ଶବ୍ଦ ଶିକ୍ଷା କରିପାରେ । ଏହା ପୃଥିବୀର ସର୍ବୋତ୍କୃଷ୍ଟ କଥା କହିପାରୁଥିବା ପକ୍ଷୀ ।

## ପୃଥିବୀର ସର୍ବାଧିକ ଭୋକିଲା ଲୋକ ଭାରତରେ

ସାରା ପୃଥିବୀରେ ଆବଶ୍ୟକ ପରିମାଣର ଖାଦ୍ୟ ପାଉ ନ ଥିବା ବ୍ୟକ୍ତିମାନଙ୍କ ମଧ୍ୟରୁ ସର୍ବାଧିକ ବ୍ୟକ୍ତି ଭାରତରେ ବାସ କରନ୍ତି ବୋଲି ଖାଦ୍ୟ ଓ କୃଷି ସଂଗଠନ ପକ୍ଷରୁ ନିକଟରେ ହୋଇଥିବା ଏକ ସମୀକ୍ଷାରୁ ଜଣାପଡ଼ିଛି । ଭାରତରେ ଏପରି ଲୋକଙ୍କ ସଂଖ୍ୟା କୋଡ଼ିଏ କୋଟି ଦଶ ଲକ୍ଷ । ଇଣ୍ଡୋନେସିଆର ସ୍ଥାନ ଏ କ୍ଷେତ୍ରରେ ଦ୍ୱିତୀୟ ।

ଏଠାରେ ଏମାନଙ୍କ ସଂଖ୍ୟା ଏକ କୋଟି ୩୦ ଲକ୍ଷ । ନାଇଜେରିଆରେ ଏହି ଶ୍ରେଣୀର ଲୋକଙ୍କ ସଂଖ୍ୟା ଏକକୋଟି ୪୦ ଲକ୍ଷ ହୋଇଥିବା ବେଳେ ଫିଲିପାଇନସ୍‌ରେ ଏକକୋଟି ଏବଂ ବର୍ମା, କଲମ୍ବିଆ ଏବଂ ଥାଇଲାଣ୍ଡରେ ୫୦ ଲକ୍ଷ ଲୋକ ଏପରି ଅବସ୍ଥାରେ ଜୀବନ ଧାରଣ କରିଛନ୍ତି ।

ଆନୁପାତିକ ଦୃଷ୍ଟିକୋଣରୁ ବିଚାରକଲେ ଏ କ୍ଷେତ୍ରରେ ଭାରତର ସ୍ଥାନ ସବା ଉପରେ । ବର୍ତ୍ତମାନ ପୃଥିବୀର ୧୦ ଭାଗରୁ ଏକ ଭାଗ ଲୋକ ଏହିପରି ଉପାସରେ କାଳ କାଟୁଛନ୍ତି । ଏଥି ମଧ୍ୟରୁ ଉନ୍ନତ ରାଷ୍ଟ୍ରମାନଙ୍କରେ କେବଳ ୪୩ କୋଟି ୫୦ ଲକ୍ଷ ଲୋକ ବାସ କରନ୍ତି ।

ପୂର୍ବ ଏସିଆ (ପାକିସ୍ତାନ ଠାରୁ ଆରମ୍ଭ)ରେ ସବୁଠାରୁ ଅଧିକ ୩୦ କୋଟି ୩୦ ଲକ୍ଷ ଅର୍ଥାତ୍ ସମୁଦାୟ ଜନସଂଖ୍ୟାର ଶତକଡ଼ା ୨୮ ଭାଗ ଲୋକ ଏପରି ଅବସ୍ଥାରେ ବାସ କରୁଥିବା ବେଳେ ଆଫ୍ରିକାର ଶତକଡ଼ା ୨୩ ଭାଗ ଲୋକ ଅର୍ଥାତ୍ ୭ କୋଟି ୨୦ ଲକ୍ଷ ଲାଟିନ ଆମେରିକାର ଶତକଡ଼ା ୧୩ ଭାଗ ଲୋକ ଅର୍ଥାତ ୪ କୋଟି ୧୦ ଲକ୍ଷ ପଶ୍ଚିମ ଏସିଆ (ଆଫଗାନିସ୍ଥାନ ପର୍ଯ୍ୟନ୍ତ)ର ଶତକଡ଼ା ୧୨ ଭାଗ ଲୋକ ଅର୍ଥାତ୍ ଏକକୋଟି ୯୦ ଲକ୍ଷ ପୂର୍ଣ୍ଣମାତ୍ରାରେ ଖାଇବାକୁ ନ ପାଇ ଦୟନୀୟ ଅବସ୍ଥାରେ ବଞ୍ଚି ରହିଛନ୍ତି ।

## ପୃଥିବୀର ଉଚ୍ଚତମ ପର୍ବତ

ଉଚ୍ଚତମ ପର୍ବତ ହିସାବରେ ହିମାଳୟ ପର୍ବତ ଶ୍ରେଣୀ ତଥା ଏଭରେଷ୍ଟ ଶୃଙ୍ଗ ସମ୍ପର୍କରେ ଆମେ ଭଲା ଅଧିକେ ଜାଣୁ । ସମୁଦ୍ର ପତ୍ତନଠାରୁ ପର୍ବତମାନଙ୍କର ଉଚ୍ଚତାର ମାନ ନିର୍ଦ୍ଧାରଣ ପଦ୍ଧତିରେ ଏହା ହିସାବ କରଯାଇଛି । ଅଥଚ ପୃଥିବୀର କେନ୍ଦ୍ର ବିନ୍ଦୁରୁ ଯଦି ଉଚ୍ଚତା ମପାଯାଏ ତେବେ ଇକ୍ୱେଡୋରୀୟ ଆଣ୍ଡେଜ ପର୍ବତର ଚିମ୍ବୋ-ରିଜୋ ଶୃଙ୍ଗଟି ଏଭରେଷ୍ଟଠାରୁ ମଧ୍ୟ ଉଚ୍ଚତର ।

କାରଣ ଆମ ପୃଥିବୀ କମଳା ଲେମ୍ବୁ ସଦୃଶ ବର୍ତ୍ତୁଳାକାର ହୋଇଥିବାରୁ କେନ୍ଦ୍ର ବିନ୍ଦୁରୁ ଭୂପୃଷ୍ଠର ଦୂରତ୍ୱ ସର୍ବତ୍ର ସମାନ ନୁହେଁ । ଏଥି ନିମିତ୍ତ କେନ୍ଦ୍ର ବିନ୍ଦୁରୁ ସମୁଦ୍ର ପତନର ଦୂରତ୍ୱ, ଉତ୍ତର ମେରୁ ଅପେକ୍ଷା ବିଷୁବମଣ୍ଡଳର ପ୍ରାୟ ଚଉଦ ମାଇଲ ଅଧିକ । ଏହି ଦୃଷ୍ଟିରୁ ବିଚାରକଲେ ଚିମ୍ବୋରଜୋ ଶୃଙ୍ଗଟି ବିଷୁବମଣ୍ଡଳ ଠାରୁ ଦୁଇ ଡ଼ିଗ୍ରୀ ମଧ୍ୟରେ ରହିଥିବା ସ୍ଥଳେ ଏଭରେଷ୍ଟ ଶୃଙ୍ଗଟି ଏହାଠାରୁ ପ୍ରାୟ ଅଠେଇଶ ଡ଼ିଗ୍ରୀ ଦୂରରେ ଥିବା ଯୋଗୁ ଏଭରେଷ୍ଟ ଠାରୁ ଚିମ୍ବୋରେଜ ଶୃଙ୍ଗଟିର ଉଚ୍ଚତା ପ୍ରାୟ ଦୁଇ ମାଇଲ ଅଧିକ ।

### ଗୋଲକ ଧନ୍ଦା ଓ ଏହାର ଉତ୍ପତ୍ତି

ଅଧିକାଂଶ ପତ୍ର ପତ୍ରିକାରେ ଗୋଲକଧନ୍ଦା ବାହାରିଥିବାର ଆମେ ଦେଖିଥାଉଁ । ଅନେକ ଧାରଣା କରିଥାନ୍ତି ଏହାର ଉତ୍ପତ୍ତି ସାଇମନ ଓ ସୁଷ୍ଟରଙ୍କ ଦ୍ୱାରା ୧୯୨୪ ମସିହାରେ ହୋଇଥିଲା ବୋଲି । କିନ୍ତୁ ପ୍ରଥମେ ୧୯୧୩ ମସିହାରେ ଡ଼ିସେମ୍ବର ୨୧ ତାରିଖରେ ନିଉୟର୍କରୁ ବାହାରୁଥିବା 'ୱାର୍ଲ୍ଡ' ପତ୍ରିକାରେ ହିଁ ଆରଥର ୱାଇନେଙ୍କ ଦ୍ୱାରା ପ୍ରକାଶ ପାଇଥିଲା । କ୍ରମଶଃ ଏହା ବିଭିନ୍ନ ରୂପ ଧାରଣ କରି ଅଧୁନା ଲଟେରୀ ସଦୃଶ ସାଧାରଣ ଜୀବନରେ ପ୍ରଭାବ ପକାଇବାକୁ ଆରମ୍ଭ କଲାଣି ।

### ମହାବିଦ୍ୟାଳୟମାନଙ୍କର ନିର୍ବାଚନ

ମହାବିଦ୍ୟାଳୟ ତଥା ବିଶ୍ୱବିଦ୍ୟାଳୟମାନଙ୍କରେ ନିର୍ବାଚନ ହେଉଛି । ସାଧାରଣତଃ ଚାର୍ଲସ ଏଲିଏଟଙ୍କୁ (୧୮୩୪-୧୯୨୬) ଏହାର ପ୍ରବର୍ତ୍ତକ ଭାବରେ ସମ୍ମାନ ଦିଆଯାଏ । ସେ ୧୮୬୯ ରୁ ୧୯୦୯ ପର୍ଯ୍ୟନ୍ତ ହାର୍ଭାଡର ସଭାପତି ଭାବରେ ଅଧିଷ୍ଠିତ ଥିଲେ । ଏଭଳି ନିର୍ବାଚନର ମୂଳଲକ୍ଷ୍ୟ ଥିଲା, ଛାତ୍ରମାନଙ୍କ ଦ୍ୱାରା ଯାଉଥିବା ପାଠ୍ୟକ୍ରମ (ସିଲାବସ)ର ଆବଶ୍ୟକତା ଦୃଷ୍ଟିରୁ ପରିବର୍ତ୍ତନ କରିବାରେ ସେମାନଙ୍କର ମତାମତ ଗ୍ରହଣ କରାଯିବ ଅଥଚ କିଛିଟା କରାଯାଇ ତାଙ୍କ ଉପରେ ଲଦି ଦିଆଯିବ ।

୧୯୬୯ ମସିହାରେ ଭର୍ଜିନିଆର ଉଇଲିୟାମ ଓ ମେରୀ ମହାବିଦ୍ୟାଳୟ ଗୁଡ଼ିକରେ ଏହି ପଦ୍ଧତି ଗ୍ରହଣ କରାଯାଇ ଥିଲା । କ୍ରମଶଃ ନିର୍ବାଚନ ପଦ୍ଧତିଟି ଏବେ ଆମେ ଅନୁସରଣ କରୁଥିଲେ ହେଁ ଏହାର ମୂଳଲକ୍ଷ ଠାରୁ ଆମର ଦୃଷ୍ଟିଭଙ୍ଗୀ ବଦଳି ଯାଇଛି ।

### ଆଦାମ ଓ ଇଭ୍

ଯଦି ପ୍ରଶ୍ନ କରାଯାଏ ଯେ, ଆଦମ ଓ ଇଭ୍‌ଙ୍କର କେତୋଟି ସନ୍ତାନ ଥିଲେ— ତେବେ ଅଧିକାଂଶ ଦ୍ୱିଧାହୀନ ଭାବେ କହିବେ—'କାହିଁକି ତାଙ୍କର ଦୁଇଟି ପିଲା' ଜଣ-କର ନାମ କେନ ଓ ଅନ୍ୟଟିର ନାମ ଆବେଲ । ଅଥଚ ପ୍ରକୃତ ପକ୍ଷେ ଆଦାମ ଓ ଇଭ୍‌ଙ୍କର ଆଉରି ପୁଅ ଝିଅ ମଧ୍ୟ ଥିଲେ । ସେମାନଙ୍କର ନାମ ହେଲା ଶେଠ ଓ ଆଦାମ ।

### ଭାରତର ଉପଗ୍ରହ

ଭାରତରେ ପ୍ରଥମ ଉପଗ୍ରହ ଆର୍ଯ୍ୟଭଟ୍ଟ ଅପ୍ରେଲ ୨୯ ତାରିଖ ୧୯୨୫ ମସିହାରେ ମହାକାଶକୁ ଛଡାଯାଇଥିଲା । ଏହାର ଓଜନ ୩୬୦ କିଲୋଗ୍ରାମ ।

ଭାରତରେ ୪୪୦ କିଲୋଗ୍ରାମ ବିଶିଷ୍ଟ ୨ୟ ଉପଗ୍ରହ ଭାସ୍କର-୨ ଜୁନ ୧୯୭୯ ମସିହାରେ ମହାକାଶକୁ ପଠାଯାଇଥିଲା ।

୨୦ ନଭେମ୍ବର ୧୯୮୧ ରେ ଭାସ୍କର—୨ ମହାକାଶକୁ ପଠାଯାଇଥିଲା । ଏହାର ଓଜନ ୪୩୬ କିଲୋଗ୍ରାମ ।

୧୯୮୧ ମସିହା ୩୧ ମେ ରେ ୪୦ କିଲୋ ଓଜନର ରୋହିଣୀ ଉପଗ୍ରହ ମହାକାଶକୁ ପଠାଯାଇଥିଲା ।

ଭାରତର ପ୍ରଥମ ରକେଟ S. L. B.—3 ୧୯୮୯ ମହିହା ଅଗଷ୍ଟ ୧୦ ତାରିଖରେ ମହାକାଶକୁ ପଠାଯାଇଥିଲା ।

ଭାରତର ୭ମ ଉପଗ୍ରହ ଇନ୍‌ସାଟ-୧ ୧୯୮୨ ମସିହା ଏପ୍ରିଲ ୧୦ ତାରିଖରେ ଆମେରିକାର ଡେଲଟା ରକେଟରୁ ପ୍ରେରଣ କରଯାଇ ଥିଲା । ଏହାର ଓଜନ ୧୧୮୦ କିଲୋଗ୍ରାମ ।

**ବିଗ୍ଭର ଶେଷ ପାଇଁ ୭୬୧ ବର୍ଷ**

ଏକଥା ବିଶ୍ୱାସଯୋଗ୍ୟ ନହେଲେ ବି ପୁନାର ଏକ ବିଗ୍ଭରାଳୟରେ ୭୬୧ ବର୍ଷ ପରେ ଏକ କେଶ୍‌ର ତଦନ୍ତ ୧୯୬୬ ମସିହା ଏପ୍ରିଲ ମାସ ୨୮ ତାରିଖରେ ଶେଷ ହୋଇଛି । ଏତେ ଦୀର୍ଘଦିନ ଧରି ଚାଲିଥିବା ଏହି କେଶ ବିଶ୍ୱ ରେକର୍ଡ ରଖୁଥିବା 'ଗିନିବୁକ୍'ରେ ସ୍ଥାନ ପାଇଛି ।

ବାଲସାହେବଙ୍କ ପାଇଜୋର ତାଙ୍କର ଜଣେ ପୂର୍ବପୁରୁଷ ମାଳୋକ ଥାରେଟ ୧୨୦୪ A. D. ସମୟରେ ଦାୟର କରିଥିବା ସପକ୍ଷରେ ରାଏ ରାୟ ଗ୍ରହଣ କରି ଏହି ରେକର୍ଡ ସୃଷ୍ଟି କରଇଛନ୍ତି ।

ଭଡଗାଓଁନ ମହଲ କୋର୍ଟର ଶତବାର୍ଷିକ ଉତ୍ସବ ପାଳନ ଅବକାଶରେ ଆୟୋଜିତ ଏକ 'ବିଗ୍ଭର ବିଳମ୍ବର କାରଣ' ସେମିନାରରେ ଏହା ପ୍ରକାଶ କରଯାଇଛି ।

**ହିରୋପାଇଁ ଆଗ୍ରହ**

ଲଣ୍ଡନର ଗୋଟିଏ ହସ୍‌ପିଟାଲର କର୍ମଚାରୀଙ୍କୁ ନିଆଁ ଲିଭାଇବାରେ ବୀରତ୍ୱ ପ୍ରଦର୍ଶନ କରିଥିବାରୁ ସମ୍ମାନିତ କରଯାଇଛି । ସେ ନିଜକୁ ହିରୋ ମନେ କରିବାକୁ ଯାଇ ଏହିପରି ଓଗୋଟି ସ୍ଥାନରେ ନିଆଁ ଲିଭାଇଥିବାର ଜଣାପଡ଼ିଛି ।

**ସର୍ବାପେକ୍ଷା ବଡ଼ ରୁଟି**

ଖାଦ୍ୟ ବା ରୁଟି ମଣିଷର ସବୁଠାରୁ ବଡ଼ ସମସ୍ୟା ଯାହାପାଇଁ ସେ ରାତି ଦିନ ଚିନ୍ତା କରେ; କିନ୍ତୁ ପ୍ୟାରିସର ମୋସିୟେ ପେଁଲ ତିଆରି କରିଥିବା ଗୋଟିଏ ରୁଟି ମଣିଷକୁ ମିଳିଗଲେ ସାରା ଜୀବନ ତାକୁ ଆଉ କିଛି କରିବାକୁ ପଡ଼ିବ ନାହିଁ ।

ପୈଁଲଙ୍କର ହିସାବରୁ ଜଣପାଏ ମଣିଷ ତାର ଜୀବନ କାଳ ମଧ୍ୟରେ ପାଞ୍ଚ ଟନ ରୁଟି ଖାଉଛି । ଏହି ତଥ୍ୟ ପ୍ରମାଣ କରିବା ନିମନ୍ତେ ସେ ପାଞ୍ଚଟନ ଅଟାରେ ଗୋଟିଏ ରୁଟି ତିଆରି କରିଥିଲେ । ସେ କୁହନ୍ତ ତାଙ୍କର ଏ ରୁଟି ମନୁଷ୍ୟର ଜୀବନ କାଳ ଭିତରେ ଆବଶ୍ୟକ ହେଉଥିବା ରୁଟିର ପ୍ରତୀକ ।

ଭୂମି ଉପରେ ପୈଁଲଙ୍କର ରୁଟି ରଖିଲେ ତାହା ଏକ ବଡ଼ ଅକର୍ମଶାଳା ଭଳି ଦେଖାଯାଏ । ଏହା ନିର୍ମାଣ କରିବାରେ ପାଞ୍ଚ କ୍ୱିଣ୍ଟାଲରୁ ଅଧିକ ପ୍ଲାଷ୍ଟିକ ଲାଗିଛି । ରୁଟି ତିଆରି ହେବା ପରେ ପୈଁଲ ତାକୁ ଗୋଟିଏ ଟ୍ରକରେ ଲଦାଇ ପ୍ୟାରିସର ମୁଖ୍ୟ ସଡକ ଉପରେ ଶୋଭଯାତ୍ରା ବାହାର କରିଥିଲେ । ଏହାପରେ ତାକୁ ରାଜଧାନୀର ଏକ ପ୍ରମୁଖ ଛକରେ ରଖିଦିଆଗଲା ।

**ଭାଗ୍ୟ ଫଳ**

ହଜାର ଥର ଧୋଇଲେ ବି ଭାଗ୍ୟର ଲେଖା ଲିଭେ ନାହିଁ । କଲିକତାର ଜଣେ ପରିବହନ କର୍ମଚାରୀଙ୍କ କଥାରୁ ଏହା ପ୍ରମାଣିତ ହୋଇଛି । ସେ ରାଜ୍ୟ ଲଟେରୀର ପ୍ରଥମ ପୁରସ୍କାର ଘୋଷିତ ହେବାର ୧୬ ମାସ ପରେ ପାଇଲେ ।

ଦିନେ ସେ ରାସ୍ତାରେ ଯାଉଥିବାବେଳେ ଲଟେରୀ ଟିକେଟଟିଏ କିଣି ପକେଟରେ ରଖିଦେଲେ । ଲଟେରୀ ଟିକେଟ କିଣିବାରେ ଅଭ୍ୟସ୍ତ ନ ଥିବାରୁ ସେ ଟିକେଟ କଥା ଭୁଲି ଗଲେ । ପ୍ୟାଣ୍ଟ ବାରମ୍ବାର ଧୋବା ଘରେ ପଡ଼ିବା ଦ୍ୱାରା ଟିକେଟ ଉପରେ ଥିବା ଲେଖା ଧୋଇଗଲା । ଯେତେବେଳେ ଲଟେରୀର ଫଳାଫଳ ଘୋଷିତ ହେଲା କର୍ମଚାରୀ ନିଜ ଡାୟରୀରେ ନୋଟ କରିଥିବା ଲଟେରୀ ଟିକେଟ ନମ୍ବର ଦେଖି ଜାଣିପାରିଲେ ସେ ପ୍ରଥମ ପୁରସ୍କାର ଲାଭ କରିଛନ୍ତି । ଟିକେଟ କଥା ମନେ ପଡ଼ିବାରୁ ସେ ପକେଟ ଅଣ୍ଡାଳିଲେ । କିନ୍ତୁ ଟିକେଟ ପରିବର୍ତ୍ତେ ସାଧା କାଗଜ ଖଣ୍ଡିଏ ମିଳିଲା । ସେ ତାକୁ ହିଁ ଦାଖଲ କରି ନିଜର ପୁରସ୍କାର ଦାବୀ କଲେ । ଲଟେରୀର କର୍ମକର୍ତ୍ତାଗଣ ସେହି କାଗଜକୁ ପରୀକ୍ଷା ନିମନ୍ତେ ବିଭିନ୍ନ ଲାବରେଟରିକୁ ପଠାଇଲେ । ଶେଷରେ ଟିକେଟ ଉପରେ ଥିବା ନମ୍ବର ୧୬ ମାସ ପରେ ବାହାରିଲା ଓ କର୍ମଚାରୀ ପ୍ରଥମ ପୁରସ୍କାର ଲାଭ କଲେ ।

**ହିଟଲରଙ୍କର ନମ୍ବର ପ୍ଲେଟ**

ନ୍ୟୁୟର୍କର ଚାର୍ଲସ ହାମିଲଟନ ଗୋଟିଏ ନିଲାମରେ ' କ ନମ୍ବର ପ୍ଲେଟ ସାଢେ ତିନି ହଜାର ଡଲାର ମୂଲ୍ୟରେ ବିକ୍ରୟ କରିଛନ୍ତି । ଏ ନମ୍ବର ପ୍ଲେଟ ପିତଳରେ ତିଆରି । ଏହାର ଲମ୍ବ ୧୯ ଇଞ୍ଚ ଓ ଚଉଡ଼ା ୮ ଇଞ୍ଚ । ଏହା ଉପରେ ସୁନାର ପାତ ଅଛି । ଏହା ହିଟଲରଙ୍କର କାର୍‌ର ନମ୍ବର ପ୍ଲେଟ । ଯୁଦ୍ଧ ସମୟରେ ଆମେରିକାର ସେନା ହିଟଲରଙ୍କର

ଜାର୍ ଭରତ କରିନେଲେ । ଏହା ବହୁବାର ଚୋରୀ ହେବା ପରେ ହାମିଲଟନ ଗ୍ୟାଲେରୀରେ ପହଞ୍ଚି ନିଲାମରେ ବିକ୍ରୟ କରାଗଲା ।

**ଓଡ଼ିଶା ଜଙ୍ଗଲ ବିଭାଗରେ ମୋଟ ୯୫୮୧ ଜଣ କର୍ମଚାରୀ**

ରାଜ୍ୟ ଜଙ୍ଗଲ ବିଭାଗରେ ମୋଟ ୯୫୮୧ ଜଣ କର୍ମଚାରୀ କାମ କରନ୍ତି । ଏମାନଙ୍କ ମଧ୍ୟରୁ ଜଣେ ଚିଫ୍ କଞ୍ଜରଭେଟର, ଦୁଇ ଜଣ ଅତିରିକ୍ତ କଞ୍ଜରଭେଟର, ଚଉଦ ଜଣ କଞ୍ଜରଭେଟର, ବୟାଅଶୀ ଜଣ ଡେପୁଟି କଞ୍ଜରଭେଟର (ଆଇ: ଏଫ: ଏସ ଏବଂ ଓ. ଏଫ୍. ଏସ. ମିଶାଇ) ଛଅ ଜଣ ଆସିଷ୍ଟାଣ୍ଟ କଞ୍ଜରଭେଟର (ଆଇ: ଏଫ: ଏସ) ୧୧୪ ଜଣ ଆସିଷ୍ଟାଣ୍ଟ କଞ୍ଜରଭେଟର (ଓ. ଏଫ୍. ଏସ) ଜଣେ ସିନିୟର ପ୍ରଶାସନିକ ଅଫିସର (ଓ. ଏ. ଏସ-୧) ଜଣେ ଚିଫ୍ ଆକାଉଣ୍ଟସ୍ ଅଫିସର (ଓ. ଏଫ୍ ଏସ-୧) ଜଣେ କଷ୍ଟ ଆକାଉଣ୍ଟାଟ (କେନ୍ଦୁପତ୍ର ପାଇଁ) ଦୁଇଜଣ ବ୍ୟକ୍ତିଗତ ସହକାରୀ (ଅଣବୈଷୟିକ) ଜଣେ ଆକାଉଣ୍ଟସ ଅଫିସର (ଓ. ଏଫ୍. ଏସ-୨) ଜଣେ ପଶୁ ଡାକ୍ତର (ନନ୍ଦନକାନନ ପାଇଁ) ଏବଂ ୧୨ ଜଣ ସେକସନ ଅଫିସର ।

ଅଣଗେଜେଟେଡ୍ କର୍ମଚାରୀମାନଙ୍କ ମଧ୍ୟରେ ୫୮୨ ଜଣ ଫରେଷ୍ଟ ରେଞ୍ଜର ଓ ଡେପୁଟି ରେଞ୍ଜର, ୧୭୩୨ ଜଣ ଫରେଷ୍ଟର, ୪୮୨୨ ଜଣ ଫରେଷ୍ଟ ଗାର୍ଡ ୨୨୮ ଜଣ ଅର୍ଡରଲି ଫରେଷ୍ଟ ଗାର୍ଡ ଏବଂ ୧୪୧୪ ଜଣ ମିନିଷ୍ଟରିଆଲ ଷ୍ଟାଫସ ।

ରାଜ୍ୟ ଜଙ୍ଗଲ ପ୍ରଶାସନକୁ ଚାରିଗୋଟି ଟେରିଟୋରିୟାଲ ସର୍କଲ, ୬ଟି ସ୍ପେସାଲ ସର୍କଲ, ତିନୋଟି କେନ୍ଦୁଲିଫ ସର୍କଲ ଏବଂ ୨୨ଟି ଟେରିଟୋରିୟାଲ ଡିଭିଜନ; ୨୮ଟି ସ୍ପେସାଲ ଡିଭିଜନ ଓ ୧୮ଟି କେନ୍ଦୁଲିଫ ଡିଭିଜନରେ ବିଭକ୍ତ କରାଯାଇଅଛି ।

ଅନୁଗୋଳ ଠାରେ ଗୋଟିଏ ଲେଖାଏ ଫରେଷ୍ଟ ଗାର୍ଡ ସ୍କୁଲ, ଫରେଷ୍ଟର ସ୍କୁଲ, ଫରେଷ୍ଟ ରେଞ୍ଜର କଲେଜ ଏବଂ ଚିଲ୍ପକୋଣ୍ଡାଠାରେ ଗୋଟିଏ ଫରେଷ୍ଟ ସର୍କଲ ରହିଛି ।

**୧୯୮୨ରେ ୫୫୬ ଜଣ ହରିଜନ ଯୁବତୀ ଧର୍ଷିତା : ୪୮୭ ଜଣଙ୍କୁ ହତ୍ୟା**

୧୯୮୨ରେ ମୋଟ ୫୫୬ ଜଣ ହରିଜନ ଯୁବତୀ ଧର୍ଷିତା ହୋଇଛନ୍ତି ଏବଂ ୪୮୭ ଜଣ ହରିଜନଙ୍କୁ ହତ୍ୟା କରାଯାଇଛି ବୋଲି ଜଣାପଡ଼ିଛି । ଉତ୍ତର ପ୍ରଦେଶରେ ୧୫୬, ମଧ୍ୟ ପ୍ରଦେଶରେ ୧୩୩, ବିହାରରେ ୨୯, ରାଜସ୍ଥାନରେ ୫୮, ମହାରାଷ୍ଟ୍ରରେ ୪୬, ହରିଆନାରେ ୨୭, ଆନ୍ଧ୍ରରେ ୧୬, ଓଡ଼ିଶାରେ ୧୧, ପଞ୍ଜାବରେ ୮, ଗୁଜରାଟ ଏବଂ କର୍ଣ୍ଣାଟକରେ ୬, ଜାମ୍ମୁ ଓ କାଶ୍ମୀରରେ ୫, କେରଳ ଓ ପଶ୍ଚିମ ବଙ୍ଗରେ ୩, ହିମାଚଳ ପ୍ରଦେଶରେ ୨ ଏବଂ ତାମିଲନାଡୁ ଓ ତ୍ରିପୁରାରେ ୧ଟି କରି ଧର୍ଷଣ ଅପରାଧ ଘଟିଛି ।

**ଦେଶର ସୈନ୍ୟ ସଂଖ୍ୟା ୧୦୦**

କାରିବିୟାନ ସାଗର ଅଞ୍ଚଳରେ ଏପରି ଏକ ଦେଶ ରହିଛି ଯାହାର ସୈନ୍ୟସଂଖ୍ୟା ମାତ୍ର ୧୦୦ । ରାଷ୍ଟ୍ରଗୋଷ୍ଠୀ ରାଷ୍ଟ୍ର ମୁଖ୍ୟମାନଙ୍କ ମଧ୍ୟରେ ଏଠାରେ ଚାଲିଥିବା ଆଲୋଚନା ବେଳେ ଏହା ଜଣାଯାଇଛି । କାରିବିୟାନ ଦେଶର ଜଣେ ପ୍ରତିନିଧି ଏ ବିଷୟରେ ପ୍ରକାଶକରି କହିଛନ୍ତି ଯେ, ତାଙ୍କ ଦେଶରେ ଥିବା ଏହି ସୈନ୍ୟଙ୍କ ମଧ୍ୟରେ ସେନା ବାହିନୀର ବ୍ୟାଣ୍ଡ ବାଦକ ସୈନ୍ୟ ମଧ୍ୟ ଅନ୍ତର୍ଭୁକ୍ତ ।

ତାଙ୍କ ରାଷ୍ଟ୍ର ହିଂସା ଓ ଦ୍ୱେଷ ଠାରୁ ଦୂରରେ ରହୁଥିବା ଯୋଗୁଁ ସାମରିକ ଶକ୍ତି ବୃଦ୍ଧି ଲାଗି ତାଙ୍କ ଦେଶ ଆଗ୍ରହୀ ନୁହେଁ । ସେନାବାହିନୀ ଓ ଅସ୍ତ୍ରଶସ୍ତ୍ର ମହଜୁଦ ରଖିବା ତାଙ୍କ ଦେଶର ପରମ୍ପରା ନୁହେଁ । ତେବେ ବର୍ତ୍ତମାନ ଗ୍ରେନେଡାକୁ ଯେଉଁ ଅସ୍ତ୍ରଶସ୍ତ୍ର ମିଳିଛି ତାହା ସେମାନଙ୍କ ଭଳି ଶାନ୍ତିପ୍ରିୟ ରାଷ୍ଟ୍ରମାନଙ୍କ ମଧ୍ୟରେ କୋକୁଆଭୟ ସୃଷ୍ଟି କରିଛି ବୋଲି ସେ ପ୍ରକାଶ କରିଥିଲେ ।

**ସର୍ବୋଚ୍ଚ ଅବତରଣ**

ଏପର୍ଯ୍ୟନ୍ତ ସର୍ବୋଚ୍ଚ ସ୍ଥାନରେ ଗୋଟିଏ ମାତ୍ର ମନୋପ୍ଲେନ ଅବତରଣ କରିଛି । ୧୯୬୦ ମସିହାରେ ସୁଇସ ପର୍ବତାରୋହୀମାନଙ୍କୁ ନେପାଳ ଅନ୍ତର୍ଗତ ହିମାଳୟର ଧଉଳାଗିରି ଅଭିଯାନରେ ଜିନିଷପତ୍ର ଯୋଗାଇ ଦେବାପାଇଁ ଗୋଟିଏ ମନୋପ୍ଲେନ ୧୮୬୯ ୪୭ ଫୁଟ ଉପରେ ଅବତରଣ କରିଥିଲେ ।

**ହସିବାପାଇଁ ୬୯ ବର୍ଷ କାରାଦଣ୍ଡ**

ଫ୍ରାନ୍ସର କୁଡ଼ବରଯୁଟି ପାନ୍ସିପ ଯେଲ୍ଡନ ରାଜା ଚତୁର୍ଦ୍ଦଶ ଲୁଇସଙ୍କର ଚନ୍ଦା ମୁଣ୍ଡ ଦେଖି ହସିଥିବାରୁ ତାଙ୍କୁ ୬୯ ବର୍ଷ କାରାଦଣ୍ଡରେ ଦଣ୍ଡିତ କରାଯାଇ ଥିଲା ।

**ଦ୍ୱୀପର ମୂଲ୍ୟ ୨୪ ପାଉଣ୍ଡ**

ପିଟର ମିନିଉଇଟ ନାମକ ଡେନମାର୍କର ଜଣେ ସରକାରୀ କର୍ମଚାରୀ ମାନହାଟାନ ଦ୍ୱୀପକୁ (ବର୍ତ୍ତମାନ ତା ଉପରେ ନ୍ୟୁୟର୍କ ସହର ଠିଆହୋଇଛି) ୨୪ ପାଉଣ୍ଡରେ କିଣିଥିବାରୁ ତାଙ୍କର ଏ ବେପରୱା ଖର୍ଚ୍ଚପାଇଁ ଡଚ୍ ସରକାର ତାଙ୍କୁ ଚାକିରିରୁ ବରଖାସ୍ତ କରିଦେଇଥିଲେ । ନ୍ୟୁୟର୍କ ସହରର ବର୍ତ୍ତମାନ ମୂଲ୍ୟ ୯, ୦୦୦, ୦୦୦, ୦୦୦ ଡଲାର ... ଠାରୁ ଅଧିକ ।

**ଅଣ୍ଟାନ ନର୍ତ୍ତକ**

ଫ୍ରାନ୍ସର ଷୋଡଶ ଶତାବ୍ଦୀର ପ୍ରସିଦ୍ଧ ନୃତ୍ୟ ନିର୍ଦ୍ଦେଶକ ସେବାଷ୍ଟିଏନ ସ୍ପିନୋଲାଙ୍କର ଗୋଡ଼ ଏଗାର ବର୍ଷ ବୟସରେ ଅଣ୍ଟାରୁ କାଟି ଦିଆଯାଇଥିଲା । ଦୁଇ ଗୋଡ଼ ନଥାଇ ମଧ୍ୟ ସେ ଅସାଧାରଣ ଦକ୍ଷତାର ସହିତ ନୃତ୍ୟ ନିର୍ଦ୍ଦେଶନା ଦେଉଥିଲେ । ସେ 'ଫାଦର ଅଫ ଦି ଫ୍ରେଞ୍ଚ ବାଲେଟ' ନାମରେ ପ୍ରସିଦ୍ଧ ।

**ସାଇକେଲ ରେସରେ ସର୍ବାଧିକ ସ୍ୱର୍ଣ୍ଣ ପଦକ**

୧୮୯୬ ଖ୍ରୀଷ୍ଟାବ୍ଦରୁ ସାଇକେଲ ରେସ ଅଲିମ୍ପିକରେ ଏକ ଖେଳରୂପେ ସ୍ଥାନ ପାଇଛି । ୧୯୦୪ ମସିହାରେ ଆମେରିକାର ମାର୍କସ ହାରଲେ—୧/୪, ୧/୩, ୧/୨, ଓ ୧ ମାଇଲ ସାଇକେଲ ରେସରେ ପ୍ରଥମ ସ୍ଥାନ ଅଧିକାର କରି ୪ଟି ସ୍ୱର୍ଣ୍ଣ ପଦକ ଲାଭ କରି ବିଶ୍ୱରେକର୍ଡ ସ୍ଥାପନ କରିଥିଲେ । ଏପର୍ଯ୍ୟନ୍ତ ସେହି ରେକର୍ଡ କେହି ଭଙ୍ଗ କରିପାରି ନାହାନ୍ତି ।

**ସ୍ୱାଧୀନ କ୍ଷୁଦ୍ରତମ ଦ୍ୱୀପ**

ସେଣ୍ଟ କ୍ରିନସେଣ୍ଟ, କାରିବିୟାନ ସମୁଦ୍ର ମଧ୍ୟରେ ଗୋଟିଏ ଛୋଟ ଦ୍ୱୀପ । ଏହା ବହୁଦିନ ପରେ ବ୍ରିଟିଶ କବଳରୁ ମୁକ୍ତ ହୋଇ ସ୍ୱାଧୀନ ହେଲା । ମିଲଟନ କାଟୋ ନାମକ ଜଣେ ଓକିଲ ଏ ରାଜ୍ୟର ରାଷ୍ଟ୍ରପତି ।

**ସୁଇଜରଲ୍ୟାଣ୍ଡରେ ସହରର ନାମ**

ସୁଇଜରଲ୍ୟାଣ୍ଡରେ କେତେକ ସହରର ଅଦ୍ଭୁତ ନାମ ରହିଛି—ଯଥା— ଗାଣ୍ଡସନ, ବିଲ, ଆପଲସ, ଗେଟ୍‌ସ, ମାଇଜରା, ବାଇ, ଗାବ୍‌ସ ଓ ଟମ୍ ।

**ଏପ୍ରିଲ ଫୁଲ ଡେ**

ଏପ୍ରିଲ ଫୁଲ ଡେର ନାମ—ସ୍କଟଲ୍ୟାଣ୍ଡରେ କୁକୋ ଡେ, ଫ୍ରାନ୍ସରେ ପିସ୍ ଡେ, ଜାପାନରେ ଫୁଲ ଡେ ଓ ସ୍ପେନରେ ବବ୍ ଡେ ।

**ତିନିଜଣ ରାଷ୍ଟ୍ରପତିଙ୍କର ହତ୍ୟା ଦେଖିଥିବା ଆମେରିକୀୟ**

ରବର୍ଟ ଲିଙ୍କନ ନାମକ ଜଣେ ଆମେରିକୀୟ ତିନିଜଣ ଆମେରିକୀୟ ରାଷ୍ଟ୍ରପତି ଆବ୍ରାହାମ ଲିଙ୍କନ, ଜେମ୍ସ ଗାରଫିଲ୍‌ଡ ଓ ଉଇଲିୟମ ମାକିନ ଲେଙ୍କର ହତ୍ୟା ସ୍ୱ ଚକ୍ଷୁରେ ଦେଖିଥିଲେ ।

**ପାଣ୍ଡର ରେକର୍ଡ ଉଡ୍‌ଡୟନ**

ଡ୍ୟୁକ ଅଫ ଉଇଲିଙ୍ଗଟନଙ୍କର ଗୋଟିଏ ପାଣ୍ଡ ୧୮୪୫ ମସିହାରେ ଦୀର୍ଘତମ

ପଥ ଉଡ୍ଡୟନ ଦ୍ୱାର ଅତିକ୍ରମ କରି ରେକର୍ଡ ସୃଷ୍ଟି କରିଛି । ଏହା ପଶ୍ଚିମ ଅଫ୍ରିକାରୁ ଲଣ୍ଡନ ପର୍ଯ୍ୟନ୍ତ ୫୫ ଦିନରେ ୭୦୦୦ ମାଇଲ (୧୧, ୨୬୫ କିଲୋମିଟାର) ପଥ ଉଡ୍ଡୟନ ଦ୍ୱାର ଅତିକ୍ରମ କରିଥିଲା ।

### ରଜା ଜେମ୍ସ ଦୁଇଥର ଅଭିଷିକ୍ତ ହୋଇଥିଲେ

ରଜା ଜେମ୍ସ ଦୁଇଥର ଅଭିଷିକ୍ତ ହୋଇଥିଲେ । ୧୫୬୭—୧୬୨୫ ପର୍ଯ୍ୟନ୍ତ ସେ ସ୍କଟଲ୍ୟାଣ୍ଡର ରଜା ଓ ୧୬୦୩ରୁ ୧୬୨୫ ପର୍ଯ୍ୟନ୍ତ ଇଂଲଣ୍ଡର ରଜା ଥିଲେ ।

### ଚୀନର ବ୍ୟକ୍ତିଗତ ଆୟ

ଚୀନର ପ୍ରତ୍ୟେକ ବ୍ୟକ୍ତିଙ୍କର ବାର୍ଷିକ ଆୟ ୧୩୯ ଡଲାର । ଆମେରିକା ଓ ଜାପାନରେ ପ୍ରତ୍ୟେକ ବ୍ୟକ୍ତିଙ୍କର ବାର୍ଷିକ ଆୟ ଯଥାକ୍ରମେ ୭.୦୨୮ ଡଲାର ଓ ୪.୧୩୯ ଡଲାର । ଆମେରିକାରେ ବାର୍ଷିକ ପ୍ରତ୍ୟେକ ବ୍ୟକ୍ତିଙ୍କ ଭାଗରେ ୧,୩୮୦ କିଲୋଗ୍ରାମ ଶସ୍ୟ ପଡ଼ିବା ବେଳେ ଚୀନର ପ୍ରତ୍ୟେକ ବ୍ୟକ୍ତି ମାତ୍ର ୫୦୦ କିଲୋଗ୍ରାମ ଶସ୍ୟ ପାଉଥାଆନ୍ତି ।

### ମାନବ ଜାତିର ଅର୍ଦ୍ଧାଂଶ ଅନାହାର ପୀଡ଼ିତ

ମାନବ ଜାତିର ଅର୍ଦ୍ଧାଂଶ ଅନାହାରରେ କାଳଯାପନ କରନ୍ତି । ୩୦ ବର୍ଷ ପୂର୍ବେ ଜଣେ ବ୍ୟକ୍ତି ନିଜ ନିମନ୍ତେ ଯେତିକି ଖାଦ୍ୟ ପାଉଥିଲା, ଏବେ ତାର ପରିମାଣ ହ୍ରାସ ପାଇଛି ।

### ସମସ୍ତେ ବେହେଲା ବାଦକ

ହଙ୍ଗେରୀର ବିଶ୍ୱପ୍ରସିଦ୍ଧ ବେହେଲା ବାଦକ ରଜ ପାଲିଙ୍କର ୪୮ଟି ପୁତ୍ର ସନ୍ତାନ ଅଛନ୍ତି । ପିତାଙ୍କ ଭଳି ପ୍ରତ୍ୟେକ ପୁତ୍ର ସୁଦକ୍ଷ ବେହେଲା ବାଦକ ।

### ଫୁଟବଲ ମ୍ୟାଚରୁ ଯୁଦ୍ଧ

କେନ୍ଦ୍ର ଓ ଦକ୍ଷିଣ ଆମେରିକାର ଫୁଟବଲ ଦର୍ଶକମାନଙ୍କ ମଧ୍ୟରେ ମଝିରେ ମଝିରେ କଳହ ଓ ହାତାହାତି ହୋଇଯାଏ । କିନ୍ତୁ ୧୯୬୯ ମସିହାରେ ଏଲ ସାଲଭଡର ଓ ହଣ୍ଡୁରସ ମଧ୍ୟରେ ହେଉଥିବା ଫୁଟବଲ ମ୍ୟାଚରେ ଦର୍ଶକମାନଙ୍କ ମଧ୍ୟରେ କଳହ ତୀବ୍ରତମ ହୋଇ ଉଠିଲା । ଏହା ଫଳରେ ଦୁଇଦେଶ ମଧ୍ୟରେ ଯୁଦ୍ଧ ଲାଗିଗଲା; କିନ୍ତୁ ଅଳ୍ପ ଦିନ ମଧ୍ୟରେ ଶାନ୍ତି ସ୍ଥାପିତ ହେଲା ।

### ଫୁଟବଲ ମ୍ୟାଚ ଦେଖିଲେ ଶୁଣିବାକୁ ୬୦୦୦ ପାଉଣ୍ଡ ଖର୍ଚ୍ଚ

ସାଉଦୀ ଆରବର ଜଣେ ଅର୍ଥପତିଙ୍କର ପୁତ୍ର ଆମେରିକାରେ ଅଧ୍ୟୟନ କରନ୍ତି ।

ଟେଡ଼ାରେ ହେଉଥିବା ଏକ ଫୁଟବଲ ମ୍ୟାଚର ବିବରଣୀ ସେ ଦୁଇଘଣ୍ଟା କାଳ ଫୋନରେ ଶୁଣିଥିଲେ । ଏଥିନିମନ୍ତେ ତାଙ୍କର ପିତାଙ୍କୁ ୬୦୦୦ ପାଉଣ୍ଡ ଦେବାକୁ ପଡ଼ିଲା ।

**ବେସରକାରୀ ସୁନା**

ପୃଥିବୀବାସୀଙ୍କ ପାଖରେ ସର୍ବମୋଟ ବ୍ୟକ୍ତିଗତ ସୁନାର ମୂଲ୍ୟ ୨୨,୫୦୦ ନିୟୁତ ପାଉଣ୍ଡ । ଏଥି ମଧ୍ୟରୁ କେବଳ ଫ୍ରାନ୍ସବାସୀଙ୍କ ପାଖରେ ୪୮୦୦ ନିୟୁତ ପାଉଣ୍ଡ ମୂଲ୍ୟର ସୁନା ଅଛି ।

**ଅର୍ଥ୍ରାଇଟିସ ଚିକିତ୍ସାରେ ଲେସର କିରଣ**

ଅର୍ଥ୍ରାଇଟିସ ଚିକିତ୍ସାରେ ରୋଗର ଚିକିତ୍ସା ନିମନ୍ତେ ଡାକ୍ତରମାନେ ଲେସର କିରଣ ବ୍ୟବହାର କରି ସାଫଲ୍ୟ ଅର୍ଜନ କରିଛନ୍ତି । ମସ୍କୋରେ ଏପ୍ରକାର ଚିକିତ୍ସା ଆରମ୍ଭ କରାଯାଇଛି ।

**ଉଚ୍ଚ ଘୁଙ୍ଗୁଡ଼ି ହୃଦୟ ଓ ଶ୍ୱାସଯନ୍ତ୍ରର କ୍ଷତି କରିପାରେ**

ଉଚ୍ଚ ଘୁଙ୍ଗୁଡ଼ି ସ୍ୱାସ୍ଥ୍ୟ ପାଇଁ ହାନିକାରକ । ଏ ପ୍ରକାର ଘୁଙ୍ଗୁଡ଼ିରେ ଅସୁସ୍ଥ ବ୍ୟକ୍ତିଙ୍କର ହୃଦଯନ୍ତ୍ର ଓ ଶ୍ୱାସ ଯନ୍ତ୍ର କ୍ଷତିଗ୍ରସ୍ତ ହୋଇପାରେ ।

**ସର୍ପାଘାତରେ ମୃତ୍ୟୁ**

ଭାରତରେ ପ୍ରତିବର୍ଷ ୧୫,୦୦୦ ଲୋକ ସାପ କାମୁଡ଼ାରେ ମରନ୍ତି । ଏହା ପୃଥିବୀର ସର୍ପାଘାତ ମୃତ୍ୟୁର ଅର୍ଦ୍ଧାଧିକ ।

**ମାଛ ଓ ପ୍ରବାଳମାଳ**

ମୋଗଲ ସମ୍ରାଟ ଜାହାଙ୍ଗୀର (୧୫୬୯–୧୬୨୭) ୨୦୦ ନିୟୁତ ପାଉଣ୍ଡ ମୂଲ୍ୟର ହୀରା, ପ୍ରବାଳ, ରୁବି ପ୍ରଭୃତି ମୂଲ୍ୟବାନ ପ୍ରସ୍ତରର ଅଧିକାରୀ ଥିଲେ । ସେ ଯେଉଁ ମାଛକୁ ଧରୁଥିଲେ ତା ଗାଲିରେ ପ୍ରବାଳ ମାଳଟିଏ ବାନ୍ଧି ଛାଡ଼ି ଦେଉଥିଲେ ।

**ଏପ୍ରିଲ ଫୁଲସ ଡେ**

୧୫୬୪ ଖ୍ରୀଷ୍ଟାବ୍ଦ ଠାରୁ ଏପ୍ରିଲ ଫୁଲ୍ସ ଡେ ପାଳିତ ହୋଇଆସୁଛି । ପୂର୍ବରୁ ଏପ୍ରିଲ ପହିଲା ବର୍ଷର ପ୍ରଥମ ଦିନ ଥିଲା । ୧୫୬୪ ଖ୍ରୀଷ୍ଟାବ୍ଦରେ ଜାନୁୟାରୀ ପହିଲାକୁ ବର୍ଷର ପ୍ରଥମ ଦିନ ରୂପେ ସ୍ଥିର କରାଗଲା । ଏହା ବହୁ ଲୋକଙ୍କ ମନରେ ଭ୍ରମ ସୃଷ୍ଟି କଲା ଓ ଏହି ଭ୍ରମ ଶେଷରେ ନିର୍ବୋଧତା ରୂପ ନେଲା । ନିର୍ବୋଧତା ଭିତରେ ହାସ ପରିହାସ ଜନ୍ମ ନେଲା । ଏଣୁ ଏପ୍ରିଲ ପହିଲାରେ ମିଛ ଖିଟିଙ୍ଗ ସାହାଯ୍ୟରେ ଲୋକେ ପରସ୍ପରକୁ ନିର୍ବୋଧ କରିବାକୁ ଚେଷ୍ଟା କରନ୍ତି ।

**ଆମେରିକାରେ ପ୍ରତିଦିନ ଗୁଳି ମାଡ଼ରେ ମୃତ୍ୟୁ**

ଆମେରିକାରେ ପ୍ରତିଦିନ ୩୨ ଜଣ ବା ପ୍ରତିବର୍ଷ ୧୨ ହଜାର ବ୍ୟକ୍ତି ଗୁଳିମାଡ଼ରେ

ନିହତ ହୁଅନ୍ତି । ହାଣ୍ଡଗନ ଦ୍ୱାରା ୯୦୦୦ ବ୍ୟକ୍ତି ନିହତ ହୁଅନ୍ତି । ଆମେରିକାରେ ପ୍ରତି ବର୍ଷ ଦୁଇ ନିୟୁତ ହାଣ୍ଡଗନ୍ ନିର୍ମିତ ହୋଇଥାଏ ।

**ଶିଶୁ ଶିକ୍ଷା**

୪୦ରୁ ୬୦ ପ୍ରତିଶତ ଭାରତୀୟ ବାଳକ ବାଳିକା ପଞ୍ଚମ ଶ୍ରେଣୀରେ ପଢ଼ିବା ପୂର୍ବରୁ ସ୍କୁଲ୍ ଛାଡ଼ି ଦିଅନ୍ତି । ଭାରତର ୬୨ ପ୍ରତିଶତ ବାଳିକା ପ୍ରାୟ ସ୍କୁଲ ଯାଆନ୍ତି ନାହିଁ ।

**ଇରାନର ଶାହଙ୍କର ସମ୍ପତ୍ତି**

ପୂର୍ବତନ ଇରାନର ଶାହଙ୍କର ସମ୍ପତ୍ତିର ମୂଲ୍ୟ ଥିଲା ୪୫,୬୦୦ ଟଙ୍କା । ଏହା ଆମେରିକାରେ ଥିଲା ।

**କେତେଜଣ ପଢ଼ିଲେଖି ଜାଣନ୍ତି**

ବୟସ୍କ ଭାରତୀୟଙ୍କ ମଧ୍ୟରୁ କେବଳ ୬୯ ପ୍ରତିଶତ ପଢ଼ିଲେଖି ଜାଣନ୍ତି । ଏ ପ୍ରକାର ବ୍ୟକ୍ତିଙ୍କର ସଂଖ୍ୟା ଇଣ୍ଡୋନେସିୟା ଓ ମାଲେସିୟାରେ ୬୦ ପ୍ରତିଶତ, ସିଙ୍ଗାପୁରରେ ୭୫ ପ୍ରତିଶତ, ଥାଇଲ୍ୟାଣ୍ଡରେ ୮୨ ପ୍ରତିଶତ ଓ ଫିଲିପିନରେ ୮୭ ପ୍ରତିଶତ ।

**ପ୍ରାଚୀନତମ ଜାତୀୟ ସଙ୍ଗୀତ**

ଜାପାନର 'କିମିଗାୟୋ' ପ୍ରାଚୀନତମ ଜାତୀୟ ସଙ୍ଗୀତ । ଏଥିରେ ନବମ ଶତାବ୍ଦୀର ଶବ୍ଦ ରହିଛି । ଜାପାନ, ଜୋର୍ଡାନ ଓ ସାନମେରିନୋର ଜାତୀୟ ସଙ୍ଗୀତ ଛୋଟ–ମାତ୍ର ଚାରି ଧାଡ଼ି କରି । ବାହାରିନ ଓ କ୍ୱାଟାରର (ଆରବ ଦେଶ) ଜାତୀୟ ସଙ୍ଗୀତରେ କୌଣସି ଶବ୍ଦ ନାହିଁ ।

**ଭୋଟର ସଂଖ୍ୟା**

୧୯୮୦ ମସିହା ଜାନୁୟାରୀ ମାସରେ ହୋଇଥିବା ନିର୍ବାଚନରେ ୪୦ ନିୟୁତ ଅଧିକ ଭୋଟର ଥିଲେ । ଏମାନଙ୍କର ସଂଖ୍ୟା ଥିଲା ୩୬୧, ୭୫୧, ୯୭୧ । ୧୯୭୭ ମସିହାରେ ଭୋଟରମାନଙ୍କର ସଂଖ୍ୟାଥିଲା—୩୨୧, ୧୭୩, ୩୨୭ । କେବଳ ସିକ୍କିମ ବ୍ୟତୀତ ଭାରତର ଅନ୍ୟାନ୍ୟ ସ୍ଥାନରେ ଭୋଟରମାନଙ୍କର ସଂଖ୍ୟା ବୃଦ୍ଧି ପାଇଛି ।

**ସର୍ବସାଧାରଣ ଋଣ**

୧୯୪୮ ମସିହାରେ ଭାରତରେ ସର୍ବସାଧାରଣଙ୍କର ମୋଟ ଋଣ ଥିଲା—୬୫୦୦ କୋଟି । ପ୍ରତି ଦରିଦ୍ର ବ୍ୟକ୍ତିର ଋଣର ପରିମାଣ ୭୫୦ ଟଙ୍କା ।

**ଦାରିଦ୍ର୍ୟର ସୀମାରେଖା**

ଭାରତର ୬୦୦ ନିୟୁତ ବ୍ୟକ୍ତିଙ୍କ ମଧ୍ୟରୁ ୨୮୦ ନିୟୁତ ବ୍ୟକ୍ତି ଦାରିଦ୍ର୍ୟର ସୀମାରେଖା ତଳେ ବାସ କରନ୍ତି ।

**ଟ୍ରେନ ଓ କଙ୍କଡ଼ା**

ଥରେ ହଜାର ହଜାର କଙ୍କଡ଼ା ମେକ୍ସିକୋର ମାଣ୍ଡାନିଲୋର ରେଳ ଲାଇନ ଉପରେ ଚାଲି ଲାଇନକୁ ଏପରି ଚିକ୍କଣ କରିଦେଲେ ଯେ, ଟ୍ରେନର ଚକ ଖସିଲା ଓ ଟ୍ରେନ କିଛି ସମୟ ପାଇଁ ଅଟକି ରହିବାକୁ ବାଧ୍ୟ ହେଲା ।

**ଶିକ୍ଷକ ଓ ଅଣନାତି**

ଡାନଭିଲର (ୟୁ. ଏସ. ଏ) ମିସ୍ ମାର୍ଗାରେଟ ମାଡାନ ପବ୍ଲିକ ସ୍କୁଲରେ ଦୀର୍ଘ ୬୪ ବର୍ଷ ଶିକ୍ଷକତା କରିଥିଲେ । ସେ ନିଜର ଜଣେ ଛାତ୍ରଙ୍କର ପୁଅ ନାତି, ଓ ଅଣନାତିଙ୍କୁ ମଧ୍ୟ ପାଠ ପଢ଼ାଇଥିଲେ ।

**୨୦୦୦ ଖ୍ରୀଷ୍ଟାବ୍ଦରେ ଭାରତର ଜନସଂଖ୍ୟା**

୨୦୦୦ ଖ୍ରୀଷ୍ଟାବ୍ଦରେ ଭାରତର ଜନସଂଖ୍ୟା ୯୦୦ ନିୟୁତ ହେବ ବୋଲି ଆଶା କରାଯାଏ ।

**ଶ୍ରମିକମାନଙ୍କ ମଧ୍ୟରୁ ୬ ପ୍ରତିଶତ ଶିଶୁ**

ଭାରତରେ ପ୍ରତିବର୍ଷ ଅପୁଷ୍ଟି ହେତୁ ୧,୦୦,୦୦୦ ଶିଶୁ ମୃତ୍ୟୁ ବରଣ କରନ୍ତି । ପ୍ରାୟ ୧୨,୦୦୦ରୁ ୧୪,୦୦୦ ଶିଶୁ ଅନ୍ଧ ହୋଇ ଯାଆନ୍ତି । କାରଣ ଭିଟାମିନ 'ଏ'ର ଅଭାବ । ଭାରତର ଶ୍ରମିକମାନଙ୍କ ମଧ୍ୟରେ ଶିଶୁ ଶ୍ରମିକମାନଙ୍କର ସଂଖ୍ୟା—୬ ପ୍ରତିଶତ ।

**ପୃଥିବୀରେ ଦୀର୍ଘତମ ଟେନିସ ମ୍ୟାଚ**

ରେଡ଼େ ଦ୍ୱୀପର (ୟୁ-ଏସ-ଏ) ନିଉପୋର୍ଟଠାରେ ୧୯୬୨ ମସିହାରେ ୧୪୨ ଗେମ୍ ବିଶିଷ୍ଟ ପୃଥିବୀର ଦୀର୍ଘତମ ଟେନିସ ଖେଳ ହୋଇଥିଲା । ଏଥିରେ ଡକ୍ଲେଡ ଓ ଡକ୍ଡେଲ, ଲେନସ୍ମିଥ ଓ ଟମ ମୋଡ଼ିଲଙ୍କୁ ୩-୬,୪୯-୪୨ ଓ ୨୨-୨୦ରେ ପରାସ୍ତ କରିଥିଲେ ।

**୧୫ ଇଞ୍ଚ ଲମ୍ବ ନଖ**

ଲକ୍ଷ୍ନୌର ପ୍ରସିଦ୍ଧ ଖାଣ୍ଡେଶ୍ୱରୀ ବାବା ଦିନରାତି ଚବିଶ ଘଣ୍ଟା ତାଙ୍କର ବାମହାତ ଉଠାଇ ରଖିଥାନ୍ତି । ଏହି ହାତରୁ ମାଂସ କମିଯାଇ ହାତ କ୍ରମେ ସରୁ ହୋଇଯାଉଛି । ଏ ହାତରେ ଥିବା ନଖର ଲମ୍ବ-୧୫ ଇଞ୍ଚ ।

**ଏକସମୟରେ ପାଞ୍ଚଟି ସନ୍ତାନ**

ଜାପାନର ୨୭ ବର୍ଷୀୟା ଗୃହିଣୀ ଶ୍ରୀମତୀ ନବିକୋୟା ମାସିଟା ଏକ ସମୟରେ ପାଞ୍ଚଟି ସନ୍ତାନ ପ୍ରସବ କରିଥିଲେ । ଏମାନଙ୍କ ମଧ୍ୟରୁ ଦୁଇଟି ପୁଅ ଓ ତିନୋଟି ଝିଅ । ପାଞ୍ଚଟି ଜୀବିତ ସନ୍ତାନ ପ୍ରସବ କରିବାରେ ସେ ପ୍ରଥମ ଜାପାନୀ ମହିଳା ।

**ତାସ ଉପରେ ବହି ଲେଖା**

ଫ୍ରାନ୍‌ସର ବିଖ୍ୟାତ ଲେଖକ ବେଞ୍ଜାମିନ କନ୍‌ସ୍‌ଟାଣ୍ଟ (୧୭୬୭-୧୮୩୦) ଗୋଟିଏ ପାଞ୍ଚଖଣ୍ଡ ଓ ୨୫୦୦ ପୃଷ୍ଠା ବିଶିଷ୍ଟ ବହି ତାସର ପଛପାଖରେ ଲେଖିଥିଲେ ।

**ଟଙ୍କାର ମୂଲ୍ୟ**

ଗୋଟିଏ ଟଙ୍କାର ମୂଲ୍ୟ ୧୦୦ ପଇସା । ତିରିଶ ବର୍ଷ ପୂର୍ବେ ଗୋଟିଏ ଟଙ୍କାର ମୂଲ୍ୟ ଯାହାଥିଲା ବର୍ତ୍ତମାନ ଗୋଟିଏ ଟଙ୍କାର ମୂଲ୍ୟ ତା ଅପେକ୍ଷା ୮୦ ପଇସା କମ । ଅର୍ଥାତ୍ ବର୍ତ୍ତମାନ ଗୋଟିଏ ଟଙ୍କାର ମୂଲ୍ୟ ୨୦ ପଇସା ।

**ଅବ୍ରାହାମ ଲିଙ୍କନଙ୍କର ହ୍ୟାଟ୍ ଓ ଚଶମା**

ଅବ୍ରାହମ ଲିଙ୍କନ ଆମେରିକାର ଷୋଡଶ ରାଷ୍ଟ୍ରପତି । ଫୋର୍ଡ ଥିଏଟରକୁ ଯାଇଥିବା ବେଳେ ସେ ସେହି ରାତ୍ରିରେ ଆତତାୟୀ ଦ୍ୱାରା ନିହତ ହେଲେ । ସେ ରାତ୍ରିରେ ସେ ଯେଉଁ ଟୋପି ଓ ଚଶମା ପିନ୍ଧିଥିଲେ ତାହା ୩୪୦୦୦ ପାଉଣ୍ଡ ମୂଲ୍ୟରେ ଏବେ ନ୍ୟୁୟର୍କରେ ଏକ ନିଲାମରେ ବିକ୍ରୟ କରାଗଲା ।

**ରକ୍ତର ସ୍ୱାକ୍ଷର**

ପାଞ୍ଚଶହ ପର୍ଯ୍ୟନ୍ତ ଜାପାନର ସମ୍ରାଟମାନେ ମାନବ ରକ୍ତ ଜଡ଼ିତ ପାପୁଲି ସାହାଯ୍ୟରେ ସ୍ୱାକ୍ଷର କରୁଥିଲେ । ଏହି ସ୍ୱାକ୍ଷର ଦଲୀଲ ଉପରେ ଚିରଦିନ ରହୁଥିଲା ।

**ସିଂହ ଚୋରୀ**

୧୯୪୯ ମସିହାରେ ପ୍ୟାରିସର ଜଣେ ଚୋର ଗୋଟିଏ ସର୍କସ ଭିତରେ ପ୍ରବେଶ କରି ପିଞ୍ଜରା ସହିତ ସିଂହଟିଏ ଚୋରୀକରି ପଳାଇଗଲା ।

**'ଅଗ୍ନି' ବ୍ୟତୀତ ସବୁ ପୋଡ଼ିଗଲା**

ପ୍ୟାରିସରେ ବ୍ରୁକ୍ସଏଣ୍ଟ ନିଉର୍ଟରେ ଗୋଟିଏ କାରଖାନାରେ ନିଆଁ ଲାଗି ଖଣ୍ଡିଏ ବହି ବ୍ୟତୀତ ସବୁ କିଛି ପୋଡ଼ିଗଲା । ଯେଉଁ ବହିଖଣ୍ଡିକ ବଞ୍ଚିଗଲା ସେ ବହିଟିର ନାମ 'the fire' ।

## ମୁଣ୍ଡରେ ଦର୍ପଣ

ଆଫ୍ରିକାସ୍ଥିତ ଗାଏନାର ଫାଓଟା ଜାଲନର ନାରୀମାନେ ମୁଣ୍ଡର କେଶକୁ ବୃତ୍ତାକାରରେ ସଜାଇ ତା ଭିତରେ ଦର୍ପଣଟିଏ ଅଳଙ୍କାର ସ୍ୱରୂପ ଖଞ୍ଜିଦିଅନ୍ତି । ଏହି ଦର୍ପଣ ସାହାଯ୍ୟରେ ସେମାନେ ପରସ୍ପରର ମୁହଁ ଦେଖନ୍ତି । ସୂର୍ଯ୍ୟକିରଣ ପଡ଼ି ଦର୍ପଣଟି ହୀରାଭଳି ଚକଚକ କରି ଅଳଙ୍କାରର ସ୍ଥାନ ମଧ୍ୟ ପୂର୍ଣ୍ଣ କରିଥାଏ ।

## ମୁଣ୍ଡର ଖପୁରୀରେ ଚୁଷ୍କପାତ୍ର

ଆବାଡ୍ ଏଲ ମୋଟାଓିଡ ସ୍ପେନର ରଜା ଥିଲେ । ସେ ୧୦୬୯ ଖ୍ରୀଷ୍ଟାବ୍ଦ ଫେବ୍ରୁଆରୀ ୨୮ ତାରିଖରେ ପରଲୋକ ଗମନକଲେ । ସେ ନିଜ ହାତରେ ହତ୍ୟା କରିଥିବା ଶତ୍ରୁମାନଙ୍କର ଖପୁରୀକୁ ଚୁଷ୍କପାତ୍ର ରୂପେ ବ୍ୟବହାର କରୁଥିଲେ ।

## ପୃଥିବୀର ବୃହତ୍ତମ ଉପସାଗର

ବଙ୍ଗୋପସାଗର ପୃଥିବୀର ବୃହତ୍ତମ ଉପସାଗର । ଲଙ୍କାରେ ଦକ୍ଷିଣ ପୂର୍ବ କୋଣ ଠାରୁ ବର୍ମାର ପାଗୋଡା ପଏଣ୍ଟ ପର୍ଯ୍ୟନ୍ତ ଏହାର ଉପକୂଳ ଅଞ୍ଚଳ ୨ ୨୫୦ ମାଇଲ ଦୀର୍ଘ ଏହାର ମୁହାଣ ୧୦୭୫ ମାଇଲ ଚଉଡା ।

## ଆମେରିକାରେ ଦରିଦ୍ର

ପ୍ରାୟ ୨୨୫,୦୦୦ ଜଣ ଆମେରିକୀୟ ସହର ତଳି ଅଞ୍ଚଳରେ ବାସ କରନ୍ତି । ଧନ ଅଭାବରୁ ଏମାନେ ଗୃହପାଳିତ ଜନ୍ତୁମାନଙ୍କର ଖାଦ୍ୟ ଭକ୍ଷଣ କରନ୍ତି ।

## ସ୍ୱଇଟ ଓ୍ୱାଟର-ବିଟରକ୍ରୀକ୍

ଆମେରିକାସ୍ଥିତ ଟେକ୍ସାସର 'ସୁଇଟଡ୍ୟାଟ'ର ସହରର ଅଧିବାସୀମାନେ 'ବିଟରକ୍ରୀକ୍'ରୁ ବ୍ୟବହାର ନିମନ୍ତେ ଜଳ ସଂଗ୍ରହ କରିଥାଆନ୍ତି ।

## ବୃକ୍ଷ ଜମି ହ୍ରାସ

ଗତ ୧୦୦ ବର୍ଷ ମଧ୍ୟରେ ଭାରତର ବୃକ୍ଷ ଜମିର ପରିମାଣ ୨୦ ପ୍ରତିଶତ ହ୍ରାସ ପାଇଛି ।

## ମଶା-ମୂଷା ଓ କୁକୁର ମାରିବାରେ ଖର୍ଚ୍ଚ

ବମ୍ବେର କର୍ପୋରେସନ ଗୋଟିଏ ମୂଷା ମାରିବା ପାଇଁ ୪୦ ପଇସା, ଗୋଟିଏ ମଶା ମାରିବା ପାଇଁ ୫୦ ପଇସା ଓ ଗୋଟିଏ ବୁଲା କୁକୁର ମାରିବାପାଇଁ ୧୮ ଟଙ୍କା ଖର୍ଚ୍ଚ କରନ୍ତି ।

## ୪୦୦୦ ବର୍ଷ ପୂର୍ବର ଧାର୍ମିକ ଅବଶେଷ

ଉତ୍ତରପ୍ରଦେଶର ଉନ୍ନା ଓ ନିକଟବର୍ତ୍ତୀ ପେରିୟା ଗ୍ରାମରେ ଚରି ହଜାର ବର୍ଷ ପୂର୍ବର ଧାର୍ମିକ ଅବଶେଷ ଭୂମିତଳୁ ଉଦ୍ଧାର କରଯାଇଛି । ଏହି ମୃତ୍ତିକା ପାତ୍ର ଖ୍ରୀଷ୍ଟପୂର୍ବ ୨୦୦୦ ବର୍ଷର ସଂସ୍କୃତି ତଥା ପ୍ରାଗ-ମହାଭାରତ ସମୟ ଉପରେ ଆଲୋକପାତ କରିବ ।

## ଭି-ଆଇ-ପି-ଶଯ୍ୟା

ଗୋଟିଏ ଦୁଇ ମିଟର ଲମ୍ବ ଓ ଦୁଇ ମିଟର ଚଉଡା ଶଯ୍ୟା ପଶ୍ଚିମ ଜର୍ମାନୀ ସ୍ଥିତ ବନ୍‌ର ହୋଟେଲ ପିଟର୍‌ସବର୍ଗର ୧୦୯ ନମ୍ବର ଭି-ଆଇ-ପି-କକ୍ଷରେ ଅଛି । ଏହାର ନାମ 'ଦି ବେଡ୍ ଅଫ୍ ଦି ରିପବ୍ଲିକ' । ଏ ଶଯ୍ୟାକୁ ଇଥିଓପିଆର ରଜା ହେଲି ସେଲାସି । ଇରନର ଶାହ, ରାଣୀ ଦ୍ୱିତୀୟ ଏଲିଜାବେଥ—(ବ୍ରିଟେନ), ସୋଭିଏଟ ରୁଷର ପୂର୍ବତନ ରାଷ୍ଟ୍ରପତି ମିଷ୍ଟର ବ୍ରେଜନେଭ ସେମାନଙ୍କର ଜର୍ମାନୀ ଗସ୍ତକାଳରେ ବ୍ୟବହାର କରିଥିଲେ ।

## ଗୃହପାଳିତ ପଶୁର ଭାରତରେ ସ୍ଥାନ

ପୃଥିବୀରେ ଥିବା ସର୍ବମୋଟ ଗୋରୁଙ୍କର ୧୬ ପ୍ରତିଶତ ଭାରତରେ ଅଛନ୍ତି । ଭାରତରେ ପୃଥିବୀରେ ଥିବା ମୋଟ ମହିଷଙ୍କର ୪୫ ପ୍ରତିଶତ, ୬୯ ନିୟୁତ ଛେଳି ଓ ୪୩ ନିୟୁତ ମେଣ୍ଢା ମଧ୍ୟ ଅଛନ୍ତି । ଗୃହ ପାଳିତ ପଶୁ ସମ୍ପଦରେ ଭାରତ ପୃଥିବୀରେ ଷଷ୍ଠସ୍ଥାନ ଅଧିକାର କରିଛି ।

## ଭାରତର ବିଦେଶୀ ଋଣ

୧୯୮୨ ମସିହା ମାର୍ଚ୍ଚ ମାସ ସୁଦ୍ଧା ଭାରତରେ ମୁଣ୍ଡପିଛା ବିଦେଶ ଋଣ ଥିଲା ୨୨୬ ଟଙ୍କା ।

## ଦରିଦ୍ର୍ୟ ସୀମାରେଖା

ଭାରତର ୨୫୧.୬୬ ନିୟୁତ ବ୍ୟକ୍ତି (ଗ୍ରାମାଞ୍ଚଳ) ଓ ୫୧.୧୦ ନିୟୁତ ବ୍ୟକ୍ତି (ସହରାଞ୍ଚଳ) ୧୯୭୮ ମସିହା ଶେଷ ସୁଦ୍ଧା ଦାରିଦ୍ର୍ୟର ସୀମାରେଖା ତଳେ ବାସ କରୁଥିଲେ । ୧୯୮୦ ମସିହା ସୁଦ୍ଧା ଭାରତରେ ୩୧୬.୮୪ ନିୟୁତ ବ୍ୟକ୍ତି ଦାରିଦ୍ର୍ୟ ସୀମାରେଖା ତଳେ ବାସ କରୁଥିଲେ ।

## ଭାରତର ପ୍ରଥମ ସାମୁଦ୍ରିକ ହାରିଅର ବିମାନ

୧୯୮୩ ମସିହା ଜାନୁୟାରୀ ମାସରେ ଭରତର ପ୍ରଥମ ସାମୁଦ୍ରିକ ହାରିଅର ପୁଷ

ବିମାନ ଭାରତୀୟ ନୌସେନାରେ ଯୋଗଦେଲା । ଏଥିରେ ମିଶାଇଲ ମଧ୍ୟ ଖଞ୍ଜାଯାଇଛି । ବ୍ରିଟେନରୁ ଏହି ବିମାନ ଆମଦାନୀ କରଯାଇଛି ।

**ଭାରତର ପ୍ରଥମ ମିସାଇଲ ଖଞ୍ଜା ବିମାନ ଶ୍ରେଣୀ**

ପୃଥିବୀର ପ୍ରଥମ ଦେଶରୂପେ ଭାରତ ନିଜର ଯୁଦ୍ଧ ବିମାନ ଶ୍ରେଣୀରେ ମିସାଇଲ ଖଞ୍ଜି ପାରିଛି । ଏହା ଆକାଶରୁ ଆକାଶକୁ ଆଘାତ କରିପାରିବ । ଜାଗୁଆର ବିମାନର ଶ୍ରେଣୀରେ ଏହି ମିସାଇଲ ଖଞ୍ଜାଯାଇ ପାରିଛି ।

**ମିଲାନ ମିସାଇଲ**

ଟ୍ୟାଙ୍କ ବିରୋଧୀ ମିଲାନ ମିସାଇଲ ଆଧୁନିକତମ ଶସ୍ତ୍ର । ଭାରତ ଏହି ମିସାଇଲ ଲାଭ କରିଛି । ଏହି ମିସାଇଲ ଫ୍ରାନ୍ସ ଓ ପଶ୍ଚିମ ଜର୍ମାନୀର ସଂଯୁକ୍ତ ଉଦ୍ୟମରେ ନିର୍ମିତ ।

**ଭାରତ ବୁଡ଼ାଜାହାଜ ନିର୍ମାଣ କରିବ**

ଭାରତ ନିର୍ମିତ ପ୍ରଥମ ବୁଡ଼ାଜାହାଜ ୧୯୮୫-୮୬ ମସିହାରେ ନୌବାହିନୀରେ ଯୋଗଦେବ ।

କାରିଗରୀ ସହାୟତାପାଇଁ ଭାରତ ଓ ପଶ୍ଚିମ ଜର୍ମାନୀ ମଧ୍ୟରେ ଏକ ଚୁକ୍ତି ସ୍ୱାକ୍ଷରିତ ହୋଇଛି । ୧୯୮୨ ମସିହା ଡିସେମ୍ବର ୩୦ ତାରିଖ ଦିନ ଭାରତୀୟ ନୌବାହିନୀର ବୁଡ଼ାଜାହାଜ ଶାଖାର ପଞ୍ଚଦଶ ବର୍ଷ ପୂର୍ଣ୍ଣହେଲା । ୧୯୬୭ ମସିହା ଡିସେମ୍ବର ୮ ତାରିଖରେ ଭାରତ ତାର ପ୍ରଥମ ବୁଡ଼ାଜାହାଜ ଆଇ-ଏନ-ଏସ କାଲଭରୀ ଋଷଠାରୁ କିଣିଲା ।

**ଭାରତର ଆକାଶୀୟ ସତର୍କ ଓ ନିୟନ୍ତ୍ରଣ ପଦ୍ଧତି**

ଭାରତର ବିମାନ ବାହିନୀ ନିଜର ଆକାଶୀୟ ସତର୍କ ଓ ନିୟନ୍ତ୍ରଣ ପଦ୍ଧତି (Air bornee warning and control system) ବିକାଶ କରିବ । ଏହା ଇଲେକ୍‌ଟ୍ରିନିକ କଣ୍ଟ୍ରୋଲ ସାହାଯ୍ୟରେ କରଯିବ ।

**ଭାରତର ତାଲିମ ଦାତା ବିମାନ**

୧୯୮୨ ମସିହା ଅକ୍ଟୋବର ୧୧ ତାରିଖରେ ଭାରତର ପ୍ରଥମ ତାଲିମଦାତା ଯୁଦ୍ଧ ବିମାନ (Trainer airarct) ଭାରତୀୟ ବିମାନ ବାହିନୀରେ ଯୋଗଦେଲା । ଏହି ବିମାନର ନାମ 'ଅଜିତ' । ଏହା ହିନ୍ଦୁସ୍ଥାନ ଏରୋନଟିକ୍‌ସ ଲିମିଟେଡଦ୍ୱାର ନିର୍ମିତ ।

ଏଥିରେ ଦୁଇଜଣ ବସିପାରିବେ । ଏହାର ପକ୍ଷ ତଳେ ଦୁଇଟି ୩୦-ଏମ-ଏମ-କମାଣ, ବୋମା ଓ ରକେଟ ନିଆଯାଇ ପାରିବ । ଏ ବିମାନ ଘଣ୍ଟାକୁ ୧,୦୦୦ କିଲୋମିଟାର ଗତିରେ ଉଡ଼ିପାରିବ ଓ ପାଞ୍ଚ ମିନିଟ ମଧ୍ୟରେ ୩୦,୦୦୦ ଫୁଟ ଉପରକୁ ଉଠି ପାରିବ ।

**ନୂତନ କମାଣ**

ଭରତୀୟ ସେନା ଆଇ-ଏଫ୍‌-ଜି-ଏମ-କେ-୧୧ ନାମକ ଏକପ୍ରକାର ନୂତନ ଧରଣର କମାଣ ବିକାଶ କରିଛି । ଏ କମାଣ ହାଲକା ଓ ହେଲିକପ୍‌ଟର ଦ୍ୱାରା ଗୋଟିଏ ସ୍ଥାନରୁ ଅନ୍ୟସ୍ଥାନକୁ ନିଆଯାଇ ପାରିବ ।

**ପ୍ରଥମ ସୌରଶକ୍ତି ଚାଳିତ ଗରମ ପବନ ପଦ୍ଧତି**

ସୂତା ଓ ଲୁଗା ଶୁଖାଇବାପାଇଁ ଭରତର ପ୍ରଥମ ସୌରଶକ୍ତି ଚାଳିତ ଗରମ ପବନ ପଦ୍ଧତି ୧୯୮୩ ମସିହା ଫେବୃୟାରୀ ପହିଲାରେ ଅହମଦାବାଦରେ ପ୍ରତିଷ୍ଠା କରଯାଇଛି । ପ୍ରତି ଘଣ୍ଟାରେ ଏହା ୮୦ ସେଣ୍ଟିଗ୍ରେଡ ଉତ୍ତାପ ବିଶିଷ୍ଟ ୪,୦୦୦ କ୍ୟୁବିକ ମିଟାର ଗରମ ପବନ ଯୋଗାଇ ପାରିବ ।

**୧୯୮୧ ମସିହା ଜନଗଣନା**

୧୯୮୧ ମସିହା ମାର୍ଚ୍ଚ ପ୍ରାରମ୍ଭରେ ଭରତର ଜନସଂଖ୍ୟା ୬୮୪-୭ ନିୟୁତ ଥିଲା । ୧୯୭୧ ମସିହାର ଲୋକସଂଖ୍ୟା ଅପେକ୍ଷା ଏହା ୨୫ ପ୍ରତିଶତ ବୃଦ୍ଧି ପାଇଛି । ଏଥିମଧ୍ୟରୁ ଗ୍ରାମାଞ୍ଚଳରେ ୫୨୫ ୭ ନିୟୁତ ଓ ସହରାଞ୍ଚଳରେ ୧୬୦ ନିୟୁତ ଲୋକ ବାସ କରନ୍ତି ।

ଉତ୍ତର ପ୍ରଦେଶର ଲୋକସଂଖ୍ୟା ଭରତର ରାଜ୍ୟମାନଙ୍କ ମଧ୍ୟରେ ସର୍ବାଧିକ ଅର୍ଥାତ ୧୧୧ ନିୟୁତ, ବିହାରର ଲୋକସଂଖ୍ୟା ୭୦ ନିୟୁତ, ମହାରଷ୍ଟ୍ରର ଲୋକସଂଖ୍ୟା ୬୩ ନିୟୁତ ।

**ଭରତର ସଂବିଧାନ**

ଭରତରେ ସଂବିଧାନକୁ ଉର୍ଦ୍ଦୁ ଭଷାରେ ଅନୁବାଦ କରିବାପାଇଁ ପ୍ରଧାନମନ୍ତ୍ରୀ ନିର୍ଦ୍ଦେଶ ଦେଇଛନ୍ତି ।

**ନିର୍ବାଚନ ଗଣରେ ବିଶ୍ୱରେକର୍ଡ**

ନେଲଗୁ ଦେଶମ ଦଳର ପ୍ରତିଷ୍ଠାତା ଓ ଆନ୍ଧ୍ରପ୍ରଦେଶର ମୁଖ୍ୟ ମନ୍ତ୍ରୀ ମିଷ୍ଟର

ଏନ-ଟି-ରମାରାଓ ଗତ ନିର୍ବାଚନରେ ୭୦ ଦିନ ମଧ୍ୟରେ ୩୫୦୦୦ କିଲୋମିଟାର ଗସ୍ତକରି ନିର୍ବାଚନ କ୍ଷେତ୍ରରେ ଏକ ବିଶ୍ୱରେକର୍ଡ ସ୍ଥାପନ କରିଛନ୍ତି ।

## ଚା ଓ କଫିରେ ଦୁଧର ବିକଳ୍ପ

ମହୀଶୂରର ସେଣ୍ଟ୍ରାଲ ଫୁଡ ଟେକନୋଲଜିକାଲ ରିସର୍ଚ୍ଚ ଇନଷ୍ଟିଚ୍ୟୁଟ, ଚା ଓ କଫିରେ ଦୁଧର ବିକଳ୍ପ ରୂପେ ଏକ ଦ୍ରବ୍ୟର ବିକାଶ କରିଛନ୍ତି ।

ଏହି ବିକଳ୍ପର ନାମ 'ହ୍ୱାଇଟନର' । ଏହା ଦୁଧର ସ୍ନେହ ପଦାର୍ଥ ଓ ଚିନା-ବାଦାମ ପ୍ରୋଟିନରେ ପ୍ରସ୍ତୁତ । ଗୋଟିଏ କେ.ଜି ହ୍ୱାଇଟନରରେ ଦୁଇଶହ କପ୍ କଫି ତିଆରି ହୋଇପାରିବ ।

## ବୃହତ୍ତମ ଚଳଚିତ୍ର ନିର୍ମାଣ

ପୃଥିବୀର ଦେଶମାନଙ୍କ ମଧ୍ୟରେ ଭାରତ ସର୍ବାଧିକ ଚଳଚ୍ଚିତ୍ର ନିର୍ମାଣ କରେ । ୧୯୮୧ ମସିହାରେ ଭାରତ ୭୩୭ଟି ଚଳଚ୍ଚିତ୍ର ନିର୍ମାଣ କରିଥିଲା ।

## ଆଣବିକ ଅସ୍ତ୍ରଶସ୍ତ୍ର

ରୁଷଠାରୁ ଆମେରିକାର ଆଣବିକ ଅସ୍ତ୍ରଶସ୍ତ୍ରର ପରିମାଣ ୫୦ ପ୍ରତିଶତ ଅଧିକ । ଆମେରିକାର ଆଣବିକ ଅସ୍ତ୍ରଶସ୍ତ୍ରର ସଂଖ୍ୟା ୧୨୦୦୦; କିନ୍ତୁ ରୁଷର ଅସ୍ତ୍ରଶସ୍ତ୍ର ସଂଖ୍ୟା ୮୦୦୦ ।

## ଚୀନର ଲୋକସଂଖ୍ୟା

ଚୀନର ଲୋକସଂଖ୍ୟା ୧୦୦୮, ୧୭୫, ୨୮୮ । ଚୀନରେ ପ୍ରତିବର୍ଷ ୧୨ ୪୨୧, ୮୬୩ ଜଣ ଲୋକ ବୃଦ୍ଧି ପାଉଛନ୍ତି ।

## ଓ୍ୟାର୍ଡ ପ୍ରସେସର

ଅଫିସମାନଙ୍କରେ ବୃଦ୍ଧି ପାଇଥିବା କାଗଜପତ୍ର କାମକୁ ସହଜ ଓ ଶୀଘ୍ର ଶେଷ କରିବାପାଇଁ ହିନ୍ଦୁସ୍ଥାନ କମ୍ପ୍ୟୁଟରସ ୱାର୍ଡ ପ୍ରସେସର ନାମକ ଏକ ଯନ୍ତ୍ର ଉଦ୍‌ଭାବନ କରିଛନ୍ତି । ଏହି ଯନ୍ତ୍ର ଦଲିଲ ବା ଅଫିସ ଡକୁମେଣ୍ଟଗୁଡ଼କୁ ସମ୍ପାଦନା କରିବାରେ ସାହାଯ୍ୟ କରି ସେଗୁଡ଼କୁ ସଜାଇ ରଖିଦେବ । ଏହା ଯେ କୌଣସି ଗାଣିତିକ ଗଣନା ଅନୁସାର ଫର୍ମ ମଧ୍ୟ ସଜାଇ ପାରିବ ।

## ପ୍ରଥମ ଇଲେକ୍‌ଟ୍ରିକ ପ୍ଲେନ

ରୁଷ ପ୍ରଥମ ବିଦ୍ୟୁତ ଶକ୍ତି ଚାଳିତ ବିମାନ ନିର୍ମାଣ କରିଛି । ଏ ପ୍ଲେନ ଅଟୋ-

ପାୟଲଟ ଦ୍ୱାରା ଚାଳିତ । ଏହା ଏକ ମାଇକ୍ରୋ ମେସିନ ଓ ଏହାର ଓଜନ ୧ କିଲୋଗ୍ରାମ ।

**ଧ୍ରୁବ ମେରୁବାଟେ ବିଶ୍ୱପରିକ୍ରମା**

ଦୁଇଜଣ ବ୍ରିଟିଶ ଅଭିଯାତ୍ରୀ ସାର ରାନ୍‌ଫ ଫେନ୍‌ସ ଓ ଚାର୍ଲସ ବର୍ଟନ ଉତ୍ତର ଓ ଦକ୍ଷିଣ ମେରୁର ଚାରିପାଖରେ ବୁଲି ବିଶ୍ୱପରିକ୍ରମା ଶେଷ କରିଛନ୍ତି । ଏହି ଯାତ୍ରା ଶେଷ କରିବାପାଇଁ ସେମାନଙ୍କୁ ତିନି ବର୍ଷ ଲାଗିଥିଲା ।

**ଜାପାନ ର ଟ୍ରେନ**

ଜାପାନ ଚୁମ୍ବକ ଚାଳିତ ଟ୍ରେନ ଅବିଷ୍କାର କରିଛି । ଏହି ଟ୍ରେନ ଗୋଟିଏ ଡେଣା ବିହୀନ ବିମାନ ଭଳି ଦେଖାଯାଉଛି । ଏହା ଲାଇନ ଉପରେ ଭାସିଲାଭଳି ଚାଲିବ । ପ୍ରତି ଘଣ୍ଟାରେ ଏ ଟ୍ରେନର ଗତି ୨୬୨ କିଲୋମିଟାର ।

**ଭାରତ ପରିଚୟ**

ଦେଶର ନାମ—ଭାରତ । ରାଜଧାନୀ—ନୂଆଦିଲ୍ଲୀ । କ୍ଷେତ୍ରଫଳ—୩୨,୮୭,୨୮୨ ବର୍ଗ କିଲୋମିଟାର । ଜନସଂଖ୍ୟା—(୧୯୮୧) ୬୮୩, ୮୧୦,୦୫୧ । ଧର୍ମ—ହିନ୍ଦୁ, ମୁସଲୀମ, ଖ୍ରୀଷ୍ଟିୟାନ, ଶିଖ, ବୌଦ୍ଧ ଓ ଜୈନ ।

ମୁଖ୍ୟଭାଷା—ଆସାମୀ, ବଙ୍ଗଳା, ଗୁଜରାଟି, ହିନ୍ଦୀ, କାନାଡ଼ା, କାଶ୍ମୀରୀ, ମାଲୟାଲମ, ମରାଠୀ, ଓଡ଼ିଆ, ପଞ୍ଜାବୀ, ସଂସ୍କୃତ, ସିନ୍ଧୀ, ତାମିଲ, ତେଲଗୁ ଓ ଉର୍ଦ୍ଦୁ । ହିନ୍ଦୀ ଭାରତର ସରକାରୀ ଭାଷା ଓ ଇଂରାଜୀ ସହକାରୀ ଭାଷା । ଏହା ବ୍ୟତୀତ ଭାରତରେ ୧,୬୫୨ ପ୍ରକାରର ବୋଲି ପ୍ରଚଳିତ । ଭାରତରେ ୩୮ ପ୍ରତିଶତ ବ୍ୟକ୍ତି ହିନ୍ଦୀ, ୯ ପ୍ରତିଶତ ତେଲୁଗୁ, ୮ ପ୍ରତିଶତ ବଙ୍ଗଳା, ୮ ପ୍ରତିଶତ ମରାଠୀ, ୭ ପ୍ରତିଶତ ତାମିଲ, ୬ ପ୍ରତିଶତ ଉର୍ଦ୍ଦୁ ୫ ପ୍ରତିଶତ ଗୁଜରାଟୀ, ୪ ପ୍ରତିଶତ କାନାଡ଼ା, ୩ ପ୍ରତିଶତ ପଞ୍ଜାବୀ, ୩ ପ୍ରତିଶତ ଓଡ଼ିଆ ଓ ୩ ପ୍ରତିଶତ ମାଲୟଲମ ଭାଷା କୁହନ୍ତି ।

ଭାରତ ପୃଥିବୀରେ ସପ୍ତମ ବୃହତ୍ତମ ଦେଶ ଓ ଲୋକସଂଖ୍ୟାରେ ଭାରତର ସ୍ଥାନ ପୃଥିବୀରେ ଦ୍ୱିତୀୟ ।

ଭାରତର ରାଜ୍ୟ—ଭାରତରେ ୨୨ଟି ରାଜ୍ୟ ଅଛି । ଆନ୍ଧ୍ରପ୍ରଦେଶ, ଆସାମ, ବିହାର, ଗୁଜରାଟ, ହରିୟାନା, ହିମାଚଳପ୍ରଦେଶ, ଜାମୁ ଓ କାଶ୍ମୀର, କର୍ଣ୍ଣାଟକ, କେରଳ, ମଧ୍ୟପ୍ରଦେଶ, ମହାରାଷ୍ଟ୍ର, ମଣିପୁର, ମେଘାଳୟ, ନାଗାଲାଣ୍ଡ, ଓଡ଼ିଶା, ପଞ୍ଜାବ, ରାଜସ୍ଥାନ, ସିକ୍‌କୀମ, ତାମିଲନାଡୁ, ତ୍ରିପୁରା, ପଶ୍ଚିମ ବଙ୍ଗ ଓ ଉତ୍ତର ପ୍ରଦେଶ ।

### କେନ୍ଦ୍ର ଶାସିତ ଅଞ୍ଚଳ

ଭାରତରେ ନଅଟି କେନ୍ଦ୍ର ଶାସିତ ଅଞ୍ଚଳ ଅଛି । ଯଥା—ଆଣ୍ଡାମାନ ଓ ନିକୋବର ଦ୍ୱୀପ, ଅରୁଣାଞ୍ଚଳ ପ୍ରଦେଶ, ଚଣ୍ଡୀଗଡ଼, ଦାଦ୍ରା ଏବଂ ନଗର ହାବେଲୀ, ଦିଲ୍ଲୀ, ଗୋଆ, ଡାମନ ଓ ଡ଼ିଉ, ଲାକ୍ଷା ଦ୍ୱୀପ, ମିଜୋରାମ, ପଣ୍ଡିଚେରୀ ।

### ଜାତୀୟ ଆୟ

୧୯୮୨ ମସିହାରେ ଭାରତର ଜାତୀୟ ଆୟ ଥିଲା ୪୯,୮୮୨ କୋଟି ଟଙ୍କା ।

### ଖାଦ୍ୟଶସ୍ୟ

୧୯୮୧-୮୨ ମସିହାରେ ଭାରତରେ ୧୩୩.୧ ନିୟୁତ ଟନ ଖାଦ୍ୟ ଶସ୍ୟ ଉତ୍ପାଦିତ ହୋଇଥିଲା ।

### କେତେକ ମୁଖ୍ୟ ସହରର ପିନକୋର୍ଡ

| | | | |
|---|---|---|---|
| କଲିକତା | ଜି ପି .ଓ | — | ୨୦୦୦୦୧ |
| ବମ୍ବେ | ,, | — | ୪୦୦୦୦୧ |
| ହାଇଦ୍ରାବାଦ | ,, | — | ୫୦୦୦୦୧ |
| ଅହମଦାବାଦ | ,, | — | ୩୮୦୦୦୧ |
| ମାଡ୍ରାସ | ,, | — | ୬୦୦୦୦୧ |
| ବାଙ୍ଗାଲୋର ସିଟି | ,, | — | ୫୬୦୦୦୨ |
| କାନପୁର ହେଡକ୍ୱାର୍ଟରସ | ,, | — | ୨୦୮୦୦୧ |
| ଜୟପୁର ଜି. ପି. ଓ. | ,, | — | ୩୦୨୦୦୧ |
| ନୂଆଦିଲ୍ଲୀ ହେଡକ୍ୱାର୍ଟରସ | | — | ୧୧୦୦୦୧ |
| ଦିଲ୍ଲୀ ଜି. ପି .ଓ | | — | ୧୧୦୦୦୬ |
| ଅମୃତସର ହେଡକ୍ୱାର୍ଟରସ | | — | ୧୪୩୦୦୧ |
| ସିକ୍କ | | — | ୮୨୮୧୨୨ |

### ଆମ ଓଡ଼ିଶା

କ୍ଷେତ୍ରଫଳ—୧,୫୫,୭୮୨ ବର୍ଗ କିଲୋମିଟର । ଲୋକସଂଖ୍ୟା—୨୬,୨୭୨,୦୫୪ ପ୍ରତି କିଲୋମିଟାର—୧୬୯ । ରାଜଧାନୀ—ଭୁବନେଶ୍ୱର । ଜିଲ୍ଲା—୧୩ । ପ୍ରଧାନ ଭାଷା—ଓଡ଼ିଆ । ପ୍ରଧାନ ସହର— ବରହମପୁର, ଭୁବନେଶ୍ୱର, କଟକ, ପୁରୀ ଏବଂ ରାଉରକେଲା ।

କୃଷି – ଓଡ଼ିଶାର ୭୬ ପ୍ରତିଶତ ଲୋକ ଚାଷୀ । ଓଡ଼ିଶାରେ ଧାନ, ଡାଲି ଓ ତୈଳ ଜାତୀୟ ଶସ୍ୟ; ଝୋଟ, ଆଖୁ, ନଡ଼ିଆ; ହଳଦୀ ଉତ୍ପାଦିତ ହୁଏ ।

ଜଙ୍ଗଲ—ଓଡ଼ିଶାର ୪୫ ପ୍ରତିଶତ ଅଞ୍ଚଳ ଅରଣ୍ୟଦ୍ୱାରା ଆଚ୍ଛାଦିତ ।

ଖଣିଜ—ଓଡ଼ିଶାରେ ଲୁହାପଥର । ମାଙ୍ଗାନିଜ୍, ଚୂନ ପଥର, ଡୋଲୋମାଇଟ, କ୍ରୋମାଇଟ, କୋଇଲା, ବକ୍‌ସାଇଟ, ଗ୍ରାଫାଇଟ, ଚୀନାମାଟି, ନିକେଲ ପ୍ରଭୃତି ଖଣିଜ ମିଳେ ।

ଶିଳ୍ପାଞ୍ଚଳ—ରାଉରକେଲା ଇସ୍ପାତ କାରଖାନା, ଜେଡ଼ବିଲର ପିଗ୍ ଆଇରନ୍ କାରଖାନା, ଯାଜପୁର ରୋଡ଼ରେ ଫେରୋକ୍ରୋମ କାରଖାନା, ଦୁଇଟି ଫେରୋ ମାଙ୍ଗାନିଜ ପ୍ଲାଣ୍ଟ, ଗୋଟିଏ ଫେରୋ ସିଲିକନ ପ୍ଲାଣ୍ଟ, ଗୋଟିଏ ଆଲୁମିନିୟମ ସ୍ମେଲଟର ପ୍ଲାଣ୍ଟ, ଦୁଇଟି ରିଫ୍ରାକ୍‌ଟରୀ ଓ ଦୁଇଟି ସିମେଣ୍ଟ କାରଖାନା, ଗୋଟିଏ ଅକ୍‌ସିଜନ କାରଖାନା, ଗୋଟିଏ ଅଲୟ ଷ୍ଟିଲ କାଷ୍ଟିଙ୍ଗ ପ୍ଲାଣ୍ଟ, ଦୁଇଟି ଝୋଟ କାରଖାନା, ଦୁଇଟି ସଲଭେଣ୍ଟ ଏକ୍‌ସଟ୍ରାସନ ପ୍ଲାଣ୍ଟ, ତିନିଟି କାଗଜକଳ, ସାର କାରଖାନା, ଦୁଇଟି ଚିନି କଳ, କାଚ କାରଖାନା, ହେଭି ମେସିନ ଟୁଲ ପ୍ଲାଣ୍ଟ, ରେଫ୍ରିଜିରେଟର ତିଆରି କାରଖାନା, ଗୋଟିଏ ରିରୋଲିଙ୍ଗ ମିଲ, ତିନିଟି ଲୁଗା କଳ ।

**ଭାରତର ସେଚ ଓ ବହୁମୁଖୀ ଯୋଜନା**

ନଗର ଜୁନାସାଗର—(ଆନ୍ଧ୍ରପ୍ରଦେଶ) ନନ୍ଦୀକୋଣ୍ଡା ଗ୍ରାମ ନିକଟରେ କୃଷ୍ଣା ନଦୀ ଉପରେ ।

ତୁଙ୍ଗଭଦ୍ରା—(ଆନ୍ଧ୍ରପ୍ରଦେଶ ଓ କର୍ଣ୍ଣାଟକର ସଂଯୁକ୍ତ ଯୋଜନା) ତୁଙ୍ଗଭଦ୍ରା ନଦୀ ଉପରେ ।

ପୋଲ୍ଲମପାଡ—(ଆନ୍ଧ୍ରପ୍ରଦେଶ) ଗୋଦାବରୀ ନଦୀଉପରେ ।

ଗଣ୍ଡକ—(ବିହାର ଓ ଉତ୍ତର ପ୍ରଦେଶର ସଂଯୁକ୍ତ ଯୋଜନା) ଏଥିରୁ ନେପାଳ ମଧ୍ୟ ଶକ୍ତି ଓ ସେଚର ସୁଯୋଗ ପାଏ ।

କୋଶୀ—(ବିହାର) ଏକ ବହୁମୁଖୀ ଯୋଜନା । ଏହା ବିହାର ଓ ନେପାଳକୁ ଜଳ ଯୋଗାଏ ।

କାକରପଡ଼ା—(ଗୁଜରାଟ) ସୁରଟ ଜିଲ୍ଲାର କାକରପଡ଼ା ଗ୍ରାମ ନିକଟରେ ତାପ୍ତୀନଦୀ ଉପରେ ।

ଉକାଇ—(ଗୁଜରାଟ) ଉକାଇଗ୍ରାମ ନିକଟରେ ତାପ୍ତୀ ନଦୀ ଉପରେ ଏକ ବହୁମୁଖୀ ଯୋଜନା ।

ମାହୀ—(ଗୁଜରାଟ) ଏକ ଦ୍ୱିମୁଖୀ ଯୋଜନା, ଗୋଟିଏ ସ୍ଥାନ କୋଲୀ ଗ୍ରାମ ନିକଟରେ ମାହୀ ନଦୀ ଉପରେ ଅନ୍ୟଟି କାନାଡା ନିକଟରେ ମାହୀନଦୀ ଉପରେ ।

ଭଦ୍ରା—(କର୍ଣ୍ଣାଟକ) ଭଦ୍ରା ନଦୀ ଉପରେ ଏକ ବହୁମୁଖୀ ଯୋଜନା ।

ଅପର କ୍ରୀଷ୍ଣା -(କର୍ଣ୍ଣାଟକ) କ୍ରୀଷ୍ଣା ନଦୀ ଉପରେ ନାରାୟଣ ପୁର ବନ୍ଧ ଓ ଅଲମଟୀ ବନ୍ଧ ।

ଘାଟପ୍ରଭ - କର୍ଣ୍ଣାଟକ) ବେଲଗମ ଓ ବିଜାପୁର ଜିଲ୍ଲାରେ ଘାଟପ୍ରଭ ନଦୀ ଉପରେ ।

ମାଳାପ୍ରଭ—(କର୍ଣ୍ଣାଟକ) ବେଲଗମ ନିକଟରେ ମାଳାପ୍ରଭ ନଦୀ ଉପରେ ବନ୍ଧ ।

ଟାୱା—(ମଧ୍ୟପ୍ରଦେଶ) ଟାୱାନଦୀ ଉପରେ ।

ଚମ୍ବଲ—(ରାଜସ୍ଥାନ ଓ ମଧ୍ୟପ୍ରଦେଶର ସଂଯୁକ୍ତ ଯୋଜନା) । ଗାନ୍ଧିସାଗର ବନ୍ଧ, ରଣାପ୍ରତାପସାଗର ବନ୍ଧ ଓ ଜୱାହର ସାଗର ବନ୍ଧ ଏହି ଯୋଜନାର ଅନ୍ତର୍ଭୁକ୍ତ ।

ଭୀମ—(ମହାରାଷ୍ଟ୍ର)—ଦୁଇଟି ବନ୍ଧ ଏହାର ଅନ୍ତର୍ଭୁକ୍ତ । ଗୋଟିଏ ପୁନା ଜିଲ୍ଲାର ପାୱାନା ନଦୀ ଉପରେ, ଅନ୍ୟଟି ସୋଲାପୁର ଜିଲାର କ୍ରୀଷ୍ଣା ନଦୀ ଉପରେ ।

ଜୟକବାଡ଼—(ମହାରାଷ୍ଟ୍ର)—ଗୋଦାବରୀ ନଦୀ ଉପରେ ।

ହୀରାକୁଦ (ଓଡ଼ିଶା) ମହାନଦୀ ଉପରେ ପୃଥିବୀର ଦୀର୍ଘତମ ବନ୍ଧ ।

ମହାନଦୀ ଡେଲଟ୍‌ସ୍କିମ—(ଓଡ଼ିଶା) ହୀରାକୁଦରୁ ଜଳ ନେଇ ଏହା ଡେଲ୍‌ଟା ଅଞ୍ଚଳକୁ ଯୋଗାଇବ ।

ଭକ୍ରାନଙ୍ଗଲ—(ହରିୟାନା, ପଞ୍ଜାବ ଓ ରାଜସ୍ଥାନର ସଂଯୁକ୍ତ ଯୋଜନା) ଭାରତର ବୃହତ୍ତମ ବହୁମୁଖୀ ନଦୀ ଉପତ୍ୟକା ଯୋଜନା, ସଟଲେଜ ନଦୀ ଉପରେ, ନଙ୍ଗଲ ବନ୍ଧ, ନଙ୍ଗଲ ହାଇଡେଲ କେନେଲ, ଭକ୍ରାଡାମର ଦୁଇଟି ପାଓ୍ୱାର ହାଉସ ଓ ଗଙ୍ଗୁୱାଲ ଏବଂ କୋଟଲାର ଦୁଇଟି ପାୱାର ଷ୍ଟେସନ ଏହାର ଅନ୍ତର୍ଭୁକ୍ତ ।

ବିୟାସ—(ହରିୟାନା, ପଞ୍ଜାବ ଓ ରାଜସ୍ଥାନର ସଂଯୁକ୍ତ ଯୋଜନା) ବିୟାସ ସଟଲେଜ ଲିଙ୍କ, ପଙ୍ଗରେ ବିୟାସ ଡାମ୍ ଏହାର ଅନ୍ତର୍ଭୁକ୍ତ ।

ଥେଇନଡାମ—(ପଞ୍ଜାବ) ରାଭି ନଦୀ ଉପରେ ବନ୍ଧ ଓ ପାୱାର ପ୍ଲାଣ୍ଟ ।

ରାଜସ୍ଥାନ କେନାଲ—(ରାଜସ୍ଥାନ) ପଙ୍ଗଡାମ୍‌ରୁ ଏ କେନାଲ ଜଳ ନେଇ ରାଜସ୍ଥାନର ଉତ୍ତର ପଶ୍ଚିମ ଅଞ୍ଚଳକୁ ସେଚ ନିମନ୍ତେ ଯୋଗାଉଛି ।

ପରମବିକୁ ଲମଅାଲିୟାର – (କେରଳ ଓ ତାମିଲନାଡୁର ସଂଯୁକ୍ତ ଯୋଜନା) ଏଥି ବଡ ଆନାମଲଇ ପାହାଡର ୬ ନଦୀ ଓ ସମତଳର ଦୁଇଟି ନଦୀର ଜଳସେଚ ନିମନ୍ତେ ଯୋଗାଉଛି ।

ଶାରଦା ସହାୟକ – (ଉତ୍ତରପ୍ରଦେଶ) ଘାଘର ନଦୀ ଉପରେ ବ୍ୟାରେଜ ଓ ଶାରଦା ନଦୀ ଉପରେ ବ୍ୟାରେଜ ।

ରମଗଙ୍ଗା – (ଉତ୍ତରପ୍ରଦଶେ) ରମଗଙ୍ଗା ନଦୀ ଉପରେ ବନ୍ଧ ।

ଫାରକା (ପଶ୍ଚିମବଙ୍ଗ) – କଲିକତା ବନ୍ଦର ଓ ହୁଗଲୀରେ ଜାହାଜ ଚଳାଚଳର ବିକାଶ ପାଇଁ ଉଦ୍ଦିଷ୍ଟ । ଫାରକାରେ ଗଙ୍ଗା ଉପରେ ବନ୍ଧ, ଜାଙ୍ଗିପୁର ନିକଟରେ ଭଗୀରଥି ଉପରେ ବନ୍ଧ ଏହାର ଅନ୍ତର୍ଭୁକ୍ତ ।

ମୟୂରାକ୍ଷୀ (ପଶ୍ଚିମବଙ୍ଗ) – କାନାଡ଼ା ବନ୍ଧ ଏହାର ଅନ୍ତର୍ଭୁକ୍ତ । ଏହା ଏକ ସେଚ ଓ ଜଳ ବିଦ୍ୟୁତ ଯୋଜନା ।

କଂସାବତୀ – (ପଶ୍ଚିମବଙ୍ଗ) କଂସାବତୀ ଓ କୁମାରୀ ନଦୀ ଉପରେ ବନ୍ଧ ।

ଦାମୋଦର ଭ୍ୟାଲି ପ୍ରୋଜେକ୍ଟ – (ପଶ୍ଚିମବଙ୍ଗ ଓ ବିହାର) – ଏକ ବହୁମୁଖୀ ସେଚର ବିକାଶ ପାଇଁ । ଏହାର ବିହାର ଓ ବଙ୍ଗରେ ବନ୍ୟାନିୟନ୍ତ୍ରଣ କରିବା ସଙ୍ଗେ ସଙ୍ଗେ ଶକ୍ତି ଯୋଗାଇବ । ଟିଲେୟା, ମାଇଥନ ଓ ପାଞ୍ଚେଟ, ଡ୍ୟାମ୍, ଟିଲେୟା, ମାଇଥନ ଓ ପାଞ୍ଚେଟର ଜଳ ବିଦ୍ୟୁତ ଯୋଜନା, ଦୁର୍ଗାପୁର ବ୍ୟାରେଜ, ବୋକାରୋ, ଚନ୍ଦ୍ରପୁର ଓ ଦୁର୍ଗାପୁରର ଥର୍ମାଲ ପାୱାର ହାଉସ ଏହାର ଅନ୍ତର୍ଭୁକ୍ତ ।



R. N. I Regd. No. 4377 61 Regd. No. 0,73
CHHATRASATHI 21st Yr. ( Monthly ) 4th Month 1984



Printed & Published by Sri B. Das on behalf of
M/s. J. Mohapatra & Co. at the Grampanchayat Press
Kaligali, Cuttack-2 Price Rs. [illegible]